# ନାଟକେ

(ଦୁଇଟି ନାଟକ)

ନାଟ୍ୟକାର

**ନାରାୟଣ ପଟ୍ଟନାୟକ**

ପ୍ରକାଶିକା
ଶ୍ରୀମତୀ ବିଜୟଲକ୍ଷ୍ମୀ ପଟ୍ଟନାୟକ
ଜଟଣୀ

ମୋ.ନଂ.: ୮୪୫୫୯୬୭୨୧୪୨

# ନାଟକେ

(ଦୁଇଟି ନାଟକ)

ନାଟ୍ୟକାର :
ନାରାୟଣ ପଟ୍ଟନାୟକ

ପ୍ରକାଶିକା :
ଶ୍ରୀମତୀ ବିଜୟଲକ୍ଷ୍ମୀ ପଟ୍ଟନାୟକ
ଜଟଣୀ

ମୁଦ୍ରଣ :
ସାରଦା ଅଫ୍‌ସେଟ୍ , ଖୋରଧା

ଅକ୍ଷର ସଜା :
ସୌରଭ,
ଶ୍ରୀହରି ବିହାର, ଜଟଣୀ

ମୂଲ୍ୟ :ଟ.୫୦ - ୦୦

୧ମ, ପ୍ରକାଶ :
ମହାବିଷୁବ ୨୦୧୩

# Natake

(Two Plays)

By : **Narayan Pattanayak**

Published :
**Smt. Bijaylaxmi Pattanayak**

Printed :
**Sarada Offset, Khordha**

D.T.P. : **Saurav, Srihari Vihar, Jatni**
Price : **Rs. 50-00 only**
**1st Edn.14. 4. 2013**

# ଅଭିମତ

ପ୍ରଫେସର ଡ. ଶରତ ଚନ୍ଦ୍ର ରଥ
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱ ବିଦ୍ୟାଳୟ, ବାଣୀବିହାର ।

ନାଟ୍ୟକାର ନାରାୟଣ ପଟ୍ଟନାୟକଙ୍କର ନାଟକ 'ଇତିବାର୍ତ୍ତା'ର ପାଣ୍ଡୁଲିପି ପାଠକଲି । ଏହାର ମଞ୍ଚସଜ୍ଜା. ଚରିତ୍ର ଚିତ୍ରଣ ଓ ନାଟକୀୟ ଦ୍ୱନ୍ଦ୍ୱ ସ୍ୱତନ୍ତ୍ର ବୋଲି କହିବାକୁ ହେବ । ଏହା ପାରିବାରିକ ନାଟକ ନୁହେଁ , ସାମାଜିକ ନାଟକ ନୁହେଁ । ମୋ ବିଚାରରେ ଏହା ଏକ ପ୍ରକାର ନୂତନ ନାଟକ ଯାହା ସୂକ୍ଷ୍ମ ଭୌତିକ ପର୍ଯ୍ୟାୟର ଅନ୍ତର୍ଭୁକ୍ତ । ଏଥିରେ ସ୍ଥୁଳ ଜଗତର ବୁଭୁକ୍ଷା ଅଛି । ରହିଛି ମଧ ସୂକ୍ଷ୍ମ ଜଗତର କିଛି ଅନୁଭବ । ଉଭୟର ସମନ୍ୱୟରେ କିଛି ନାଟକୀୟ ଅଭିବ୍ୟକ୍ତି କିଛି ଭିନ୍ନ ଧରଣର ହୋଇଛି । କ୍ଷୁଧାର ଉତ୍କଟତା ଓ ଜାହିରପଣିଆ ବେଶ୍ ଅନୁଭବ୍ୟ ହୋଇଛି । ଖାଇବା ସହିତ ବଞ୍ଚିବା ସମ୍ବନ୍ଧିତ । କେବଳ ଖାଇବା ନୁହେଁ ଖାଇବା ଦ୍ୱାରା ବଞ୍ଚିବା କଥା ଏଥିରେ କୁହାଯାଇଛି । ଏଥି ସହିତ ଚେତନାର ଜ୍ୟୋତି କଥା ମଧ କୁହାଯାଇଛି ଯାହାର ସ୍ଥିତି ଅନନ୍ୟ । ସ୍ଥୁଳ ତାକୁ ଚିହ୍ନି ପାରୁନି , ବୁଝିପାରୁନି ସହଜରେ, ଗ୍ରହଣ ମଧ କରିପାରୁନି ସୁବିଧାରେ । ଜୀବ ଓ ଜୀବନ, ଜୀବନ ଓ ମୃତ୍ୟୁ ଭିତରେ ସମ୍ପର୍କକୁ ଏଥିରେ ରୂପାୟନ କରାଯାଇଛି । ସ୍ଥୁଳ ସବୁ ଯୁଗରେ ଥିଲା । କେତେବେଳେ ଶଙ୍ଖାସୁର,ହିରାଣ୍ୟାକ୍ଷ. ହିରଣ୍ୟକଶିପୁ ପୁଣି କେତେବେଳେ ରାବଣ ଓ କୁମ୍ଭକର୍ଣ୍ଣ ରୂପରେ । କଂସ ରୂପରେ ଥିଲା ବେଳେ ବକା, ଷଣ୍ଡା, ଶକଟା ଥିଲେ ତାହାର ଅନୁଚର । ମହାମାନୀ ଦୁର୍ଯ୍ୟୋଧନ ରୂପରେ ତା ପାଖରେ ଥିଲେ ତାର ଅନେଶୋତ ଭ୍ରାତା , କର୍ଣ୍ଣ, ଶଲ୍ୟ, ଦ୍ରୋଣ । ପ୍ରଥମ ବିଶ୍ୱଯୁଦ୍ଧରେ ସେ ଥିଲା ବିଶ୍ମାର୍କ ପୁଣି ସମୟ କ୍ରମେ ହିଟଲର ଓ ମୁସୋଲିନ ମଧ

ଥିଲା । ସେ ଯୁଗ ଯୁଗର ଶାସନର ଦଣ୍ଡଧାରୀ ବୋଲି ନାଟ୍ୟକାର ନାଟକରେ ଦର୍ଶାଇଛନ୍ତି। ଜ୍ଞାନ ଓ ଗୁଣର ଭୂମିକା ସମ୍ବନ୍ଧରେ ମଧ୍ୟ ଅବତାରଣା କରାଯାଇଛି । ବିଦ୍ୱାନ ଯେ ସର୍ବତ୍ର ପୂଜିତ ହୁଏ ଏବଂ ଗତି ରହିତ ବିଦ୍ୟା ଯେ ପ୍ରଗତି ରହିତ ଜ୍ଞାନ ସହ ସମାନ ଏଇ କଥା ନାଟ୍ୟକାର ଦର୍ଶାଇଛନ୍ତି ।

ଜୀବ ଓ ଜୀବନର କଥା ମଧ୍ୟ କୁହାଯାଇଛି ନାଟକରେ । ଆଲୋକର ଜୟଗାନ କରାଯାଇଛି । ସତ୍ୟର ମହିମା ଗାନ କରାଯାଇଛି । ଅମୃତର ପ୍ରଶଂସା କରାଯାଇଛି ନାଟକ ଶେଷରେ । ଶାନ୍ତିର ଉଚ୍ଚାରଣରେ ନାଟକର ସମାପ୍ତି ଘଟିଛି । ଜୀବନର ଲକ୍ଷ୍ୟ ଯେ ଅସତ୍‌ରୁ ସତ୍ ଆଡ଼କୁ , ଅନ୍ଧାରରୁ ଆଲୋକ ଆଡ଼କୁ ପୁଣି ମୃତ୍ୟୁରୁ ଅମୃତତ୍ୱକୁ , ଶେଷରେ ଶାନ୍ତିରେ ସବୁକିଛିର ପରିସମାପ୍ତି ଏ କଥା ଯାହା ଭାରତୀୟ ଦର୍ଶନ କହେ ତାହାର ଉଲ୍ଲେଖ ନାଟ୍ୟକାର ଶେଷରେ କରିଛନ୍ତି । ନାସ୍ତିକତାରେ ନାଟକଟି ଶେଷ ନହୋଇ ଆଶା, ବିଶ୍ୱାସ ଓ ସର୍ବୋପରି ଆସ୍ତିକତାରେ ସମାପ୍ତି ହୋଇଛି । ଦର୍ଶକ ନିକଟରେ ଜୀବନର ଆଲୋକମୟ ଦିଗଟିର ମୁଦ୍ରାଙ୍କ ଅଙ୍କିତ ହୋଇଛି ।

ନାଟ୍ୟକାର ଶ୍ରୀ ନାରାୟଣ ପଟ୍ଟନାୟକଙ୍କର ଅନ୍ୟ ଏକ ନାଟକ 'ଚରୈବେତି'ରେ ଗତିଶୀଳତା ହିଁ ଜୀବନ , ଆଉ ଗତି ରହିତ ହିଁ ମୃତ୍ୟୁ ବୋଲି ପ୍ରକାରାନ୍ତରେ ଉପସ୍ଥାପିତ ହୋଇଛି । ଜଡ଼ର ଆବଶ୍ୟକୀୟ ଭୂମିକାକୁ ସ୍ୱୀକାର କରାଯାଇଛି । ଜଡ଼ ସ୍ତରରେ କର୍ମ ପ୍ରବଣତା,ପ୍ରାଣ ସ୍ତରରେ ପ୍ରତ୍ୟାଖ୍ୟାନ, ମନ ସ୍ତରରେ ସମର୍ପଣରେ ସମନ୍ୱୟ ଚେତନା ବିକଶିତ ହୁଏ । ଏହି ବିକଶିତ ଚେତନାର ଭିତ୍ତିରେ ଦିବ୍ୟ ଜନନୀଙ୍କର ପ୍ରତିଷ୍ଠା ସମ୍ଭବ ହୁଏ । ଓଁ ଆନନ୍ଦମୟୀ, ଚୈତନ୍ୟମୟୀ, ସତ୍ୟମୟୀ ପରମେଙ୍କର ଆବିର୍ଭାବ ତଥା ଅଭିବ୍ୟକ୍ତି ଘଟେ ଦେହ,ପ୍ରାଣ ଓ ମନରେ । ମାଟିର ନିରାଜନା କରାଯାଇଛି । ମାଟି ଯେ ମୂଳ ଆଧାର ଜୀବନର , ଏହା ଉଦ୍‌ଘୋଷିତ ହୋଇଛି ।

ଏକ ଚରିତ୍ର ମୁଖରେ ନାଟ୍ୟକାର କହିଛନ୍ତି,"ଏ ବାସ୍ନା ପହିଲିଆଷାଢ଼ରେ ମାଟିର ବାସ୍ନା । ଏହା ହିଁ ମୋର ଜୀବନ । ଏହା ହିଁ ମୋରଜୀବିକା । ଜଡ଼, ପ୍ରାଣ, ମନର ସ୍ୱରୂପ ଉଦ୍‌ଘାଟିତ ହୋଇଛି ଅଭିନୟ ମାଧ୍ୟମରେ । ଚେତନାର ବିକାଶ ପାଇଁ ଏଇ ତିନି ଗୋଟି ସତ୍ତାର ଉପାଦେୟତା ରହିଛି ବୋଲି ନାଟକରେ ସ୍ୱୀକୃତ ହୋଇଛି । ଜୀବନର ବିଭିନ୍ନ ଦିଗ ଅର୍ଥାତ୍ ପ୍ରବୃତ୍ତି ଓ ପ୍ରବଣତା ସମ୍ବନ୍ଧରେ ଭିନ୍ନ ଭିନ୍ନ ଭାବରେ ନାଟକରେ ବହୁ କଥା ଉପସ୍ଥାପିତ ହୋଇଛି । ଜୀବନକୁ ଭିନ୍ନ ଭିନ୍ନ ଗବାକ୍ଷରୁ ଦେଖିଛନ୍ତି ନାଟ୍ୟକାର , ପୁଣି ଦର୍ଶକଙ୍କୁ ଦେଖାଇ ଦେବାକୁ ମଧ୍ୟ ପ୍ରୟାସ କରିଛନ୍ତି । ବାହାରୁ ଦେଖିଲେ ଏକ ଉଦ୍ଭଟ ନାଟକ ପରି ଏହା ମନେ ହୋଇପାରେ । ମାତ୍ର ଟିକିଏ ଗଭୀରତାକୁ ଗଲେ ଏ ନାଟକଟିର ସ୍ୱରୂପ ଓ ସ୍ୱର ଭିନ୍ନ ଜଣାଯାଏ । ଅନ୍ୟ ଭାଷାରେ କୁହାଯାଇପାରେ ଯେ ନାଟକଟିରେ ଜୀବନଧର୍ମିତା ରହିଚି ।

ମୋଟା ମୋଟି ଭାବରେ କୁହାଯାଇପାରେ ଯେ ନାଟକ 'ଚରୈବେତି' ଓ 'ଇତିବାର୍ତ୍ତା' – ଏଇ ଦୁଇ ନାଟକର ମର୍ମବାଣୀ ହେଉଛି ସ୍ଥୁଳତାରୁ ସୂକ୍ଷ୍ମତା ଆଡ଼କୁ ଯିବା ପାଇଁ ଅଭିପ୍‌ସା । ଅବଶ୍ୟ ଏହାର ମଞ୍ଚସଜା ଓ ମଞ୍ଚ ରୂପାୟନ କଷ୍ଟକର । ଏକ ମନନଶୀଳ ନାଟକ ଭାବରେ ଏଇ ଦୁଇଗୋଟି ନାଟକକୁ ଗ୍ରହଣ କରାଯାଇପାରେ । ଜୀବନର ସାର୍ଥକତା ନିମନ୍ତେ ଚେତନାର ଅଗ୍ରଗତି ଏକାନ୍ତ କାମ୍ୟ । ଏହି ବାର୍ତ୍ତା ରହିଛି ଦୁଇଗୋଟି ନାଟକରେ । ନାଟକ ଦୁଇଟି ଦର୍ଶକମାନଙ୍କ ଦ୍ୱାରା ଆଦୃତ ହେବ ଏହା ମୋର ଆଶା ଓ ବିଶ୍ୱାସ । ଲେଖକଙ୍କର ଲେଖନୀ ଚଳଚଞ୍ଚଳ ରହୁ ,ଏହା ହିଁ ମୁଁ କାମନା କରୁଛି ।

ତା. ୩୧ । ୧୦ । ୨୦୧୨

# ଅଭିମତ

**ପ୍ରଫେସର ଅମରେନ୍ଦ୍ର ନାରାୟଣ ଷଡ଼ଙ୍ଗୀ, ଅଧ୍ୟକ୍ଷ,**

ମହିଳା ମହାବିଦ୍ୟାଳୟ , ଖୋରଧା ।

ନାଟକ ହେଉଛି ଦୃଶ୍ୟକାବ୍ୟ । ସେ ଦୃଷ୍ଟିରୁ ଗୋଟାଏ ଭଲ ନାଟକରେ ଆଙ୍ଗୀକ ଓ ଆତ୍ମିକ ଉଭୟ ଦିଗର ପରିପୂରକତ୍ୱ ରହିବା ବାଞ୍ଛନୀୟ । ନାଟକର ବିଷୟବସ୍ତୁ କେବଳ ଉଚ୍ଚମାନର ହୋଇଥିଲେ ମଧ୍ୟ ତାହା ମଞ୍ଚୋପଯୋଗୀ ହୋଇନପାରିଲେ ଦର୍ଶକଙ୍କୁ ପ୍ରଭାବିତ କରିପାରେନି । ସେମିତି ଆଙ୍ଗୀକରେ ନୂତନତ୍ୱ ଥାଇ ଯଦି ନାଟକର ଅନ୍ତରାତ୍ମା ଅନ୍ତସାର ଶୂନ୍ୟ ହୋଇଥାଏ, ତାହାହେଲେ ତାହା ଦର୍ଶକଙ୍କ ହୃଦୟରେ ବେଶି ଦିନ ତିଷ୍ଠି ରହିପାରେନା । ସେକ୍ସ୍‌ପିଅର ହୁଅନ୍ତୁ ବା କାଳିଦାସ ହୁଅନ୍ତୁ , ସେମାନେ ଜଣେ ଜଣେ ଶ୍ରେଷ୍ଠ କବି ହିସାବରେ ନିଜ ନାଟକରେ ଗଭୀର କାବ୍ୟିକ ଚେତନା ସହ ମଞ୍ଚୋପଯୋଗୀ ଆଙ୍ଗୀକର ଏଭଳି ପ୍ରୟୋଗ କରିଥିଲେ ଯାହା କି ସେମାନଙ୍କୁ ଏ ଯାବତ୍ ଶ୍ରେଷ୍ଠ ନାଟ୍ୟକାରର ସମ୍ମାନ ସହ ଦର୍ଶକୀୟ ପ୍ରଶଂସା ଦେଇ ଆସିଛି । ଶତାବ୍ଦୀ ଶତାବ୍ଦୀ ଧରି ଦର୍ଶକ ସେ ନାଟକ ଦେଖି ଆସୁଛନ୍ତି । ଅଭିଭୂତ ହେଉଛନ୍ତି ଏବଂ ସେମାନଙ୍କ ହୃଦୟରେ କେବେ ନଲିଭିବା ଭଳି ଏକ ରେଖାପାତ ହେଉଛି ।

ଶ୍ରୀଯୁକ୍ତ ନାରାୟଣ ପଟ୍ଟନାୟକଙ୍କ ନାଟକ ଦୁଇଟି 'ଚରୈବେତି' ଓ 'ଇତିବାର୍ତ୍ତା' କେବଳ ପଢ଼ିବାର ସୁଯୋଗ ପାଇନି, ଜଟଣୀର ଉତ୍ତରାୟଣୀ ରଙ୍ଗମଞ୍ଚରେ ଅଭିନୀତ ହେଲା ବେଳେ ଦେଖିବାର ସୁଯୋଗ ମଧ୍ୟ ପାଇଛି । ଜଣେ ଅଭିନେତା ଓ ନିର୍ଦ୍ଦେଶକ ଭାବରେ ଖୁବ୍ ମନଯୋଗ ସହକାରେ ନାଟକ ଦୁଇଟି ଅମୂଳ ଚୂଳ ଦେଖିଛି। ବିଷୟ ବସ୍ତୁ ଓ ଉପସ୍ଥାପନା ଦୃଷ୍ଟିରୁ ଦୁଇଟିଯାକ ନାଟକ ମୋ ମନକୁ ବହୁଦିନ ଧରି ଆନ୍ଦୋଳିତ କରିଛି । ବିଷୟବସ୍ତୁ ଦାର୍ଶନିକ ହୋଇଥିବା ଯୋଗୁ ସାମାନ୍ୟ କ୍ଲିଷ୍ଟ ହେଲେ

ମଧ୍ୟ ଆଙ୍ଗୀକ ଦୃଷ୍ଟିରୁ ମଞ୍ଚରେ ସଫଳ ନାଟକ ଭାବରେ ସ୍ୱୀକୃତି ପାଇଛି ଏବଂ ପ୍ରତିଯୋଗିତାରେ ପୁରସ୍କୃତ ହୋଇଛି ।

ଇତିବାର୍ତ୍ତାରେ ଜିଜୀବିଷା, ଜିଗୀଷା, ଜିଜ୍ଞାସା, ବ୍ୟୁତ୍ଥାନ ଏବଂ ଜ୍ୟୋତି ପରି ପଞ୍ଚ ପ୍ରବୃତ୍ତିର ସମାହାରରେ ଗଢ଼ା ହୋଇଛି ମଣିଷ ବା ସ୍ଥୁଳ - ଏଇ ଦର୍ଶନକୁ ଉପସ୍ଥାପନ କରାଯାଇଥିବା ବେଳେ 'ଚରୈବେତି'ରେ ଜଡ଼, ମନ ଓ ପ୍ରାଣର ଉର୍ଦ୍ଧ୍ୱରେ ଯେ ଏକ ଦିବ୍ୟଶକ୍ତି ରହିଛି ଯାହାର ପ୍ରାପ୍ତିରେ ହିଁ ଚେତନା ତ୍ରୟର ପରିପୂର୍ଣ୍ଣତା ସମ୍ଭବ - ଏଇ ଦର୍ଶନକୁ ରୂପାୟିତ କରାଯାଇଛି । ଏଇ ଗୁଢ଼ ଦର୍ଶନକୁ ସାମାଜିକ ଚରିତ୍ର ମାଧ୍ୟମରେ ସୁନ୍ଦର ଭାବରେ ଚିତ୍ରଣ କରିବାରେ ସଫଳ ହୋଇଛନ୍ତି ନାଟ୍ୟକାର । ନାଟକରେ ପ୍ରତୀକାତ୍ମକ ବିଭିନ୍ନ ରଙ୍ଗର ପୋଷାକ ବ୍ୟବହାର କରାଯାଇ ଦର୍ଶକଙ୍କୁ ଚିନ୍ତା କରିବାର ଖୋରାକ ଯୋଗାଇ ଦିଆଯାଇଛି । ନାଟକରେ ଆଲୋକ ଏବଂ ସଙ୍ଗୀତର ସୃଜନାତ୍ମକ ବ୍ୟବହାର କରାଯିବା ପାଇଁ ନିର୍ଦ୍ଦେଶକଙ୍କ ପାଖରେ ଯଥେଷ୍ଟ ସୁଯୋଗ ରହିଛି ।

ମୋର ଦୃଢ଼ ଆଶା ନାଟକ ଦୁଇଟି ଆଙ୍ଗୀକ ଓ ଆତ୍ମିକ ଦୃଷ୍ଟିରୁ ଦର୍ଶକଙ୍କ ମନକୁ ନିଶ୍ଚୟ ପ୍ରଭାବିତ କରିବ ।

**ଅମରେନ୍ଦ୍ର ନାରାୟଣ ଷଡ଼ଙ୍ଗୀ**

# ନିଜକଥା

ମୁଁ ଯିଏ ଏବଂ ଯେପରି ନୁହେଁ ନିଜକୁ ସିଏ ଓ ସେପରି ଭାବରେ ଉପସ୍ଥାପନ କରି ଅଭିନ୍ନତାର ପ୍ରତ୍ୟୟ ସୃଷ୍ଟି କରିପାରିବା ହିଁ ନାଟକ । ଯେଉଁ ତିନୋଟି ମୁଖ୍ୟ ପରିବେଶରେ -ପରିସ୍ଥିତିରେ - ସ୍ୱଭାବରେ ଭିନ୍ନ ଭାବ ଉପଲବ୍ଧ ହୁଏ ବା ଆମେ ନିଜକୁ ସମ୍ପୂର୍ଣ୍ଣ ଭୁଲି ଯାଉ ତାହା ହେଲା କ୍ରୋଧ, ଲୋଭ ଏବଂ ନାଟକ । ପ୍ରଥମ ଦୁଇଟି ଅବସ୍ଥାରେ ଆମେ ଚେତନାହୀନ ମାତ୍ର ନାଟକ କ୍ଷେତ୍ରରେ ସମ୍ପୂର୍ଣ୍ଣ ସଚେତନ । ମୁଁ ଯିଏ ନୁହେଁ ସିଏ ବୋଲି ଦର୍ଶକଙ୍କୁ ମୋହାବିଷ୍ଟ କରିପାରିବାରେ ହିଁ କଳାକାରର ସାର୍ଥକତା । ଏହାର ମୂଳ ଲକ୍ଷ୍ୟ ହେଉଛି, ପୁରାଣ ଏବଂ ସାମାଜିକ କ୍ଷେତ୍ରରୁ ବିଷୟ ବସ୍ତୁ ଓ ଚରିତ୍ର ନିର୍ଣ୍ଣୟ ଏବଂ ଯାଥାସାଧ ସେ ସବୁର ନିଛକ ଉପସ୍ଥାପନ କରି ଦର୍ଶକମାନଙ୍କୁ ମୋହାବିଷ୍ଟ କରାଇବା । କଳାକାର ମାନଙ୍କ ଚରିତ୍ରାବଳୀରେ ବର୍ଣ୍ଣିତ ଷଡ଼ରସରେ ବିମୋହିତ କରିପାରିବା ହିଁ ନାଟକର ସଫଳତା ।

ବହୁଧା ବିଭକ୍ତ ଚରିତ୍ରମାନଙ୍କର ଆବଶ୍ୟକତା ଦୃଷ୍ଟିରୁ ନିର୍ଦ୍ଦିଷ୍ଟ ଭୂମିକାରେ ସକ୍ଷମ କଳାକାର ଚୟନ ଏବଂ ସମ୍ପୂର୍ଣ୍ଣ ନାଟକର ବିଭିନ୍ନ ଚରିତ୍ରକୁ ଏକ ସମୟରେ ହୃଦୟଙ୍ଗମ କରିବା ହିଁ ନିର୍ଦ୍ଦେଶକଙ୍କ ଦକ୍ଷତା । ନାଟ୍ୟକାରଙ୍କ ଚରିତ୍ର ପରିକଳ୍ପନା ଓ ନିର୍ଦ୍ଦେଶକଙ୍କର ଚରିତ୍ର ସଂଯୋଜନା ସହ କଳାକାରମାନଙ୍କର ଚରିତ୍ର ଚିତ୍ରଣରେ ସ୍ୱାଭାବିକତା ଆଣିପାରିବାର ଦକ୍ଷତାରେ ହିଁ ନାଟକର ସଫଳତା । ଯେ କୌଣସି ନାଟକରେ ଲେଖକଙ୍କ ବିଷୟବସ୍ତୁ ପରିକଳ୍ପନା ସହ ଚରିତ୍ର ସୁସଂଯୋଜନା, ନିର୍ଦ୍ଦେଶକଙ୍କ ହୃଦୟବୋଧ ଓ କଳାକାରମାନଙ୍କର ଅଭିନୟ କୁଶଳତା ଏକ ସଫଳ ନାଟକର ମୂଳମନ୍ତ୍ର । ଲେଖକଙ୍କର ବିଷୟବସ୍ତୁରେ ଆବଶ୍ୟକ ଚରିତ୍ର ନିର୍ଦ୍ଧାରଣ ଓ ନିର୍ଦ୍ଦେଶକଙ୍କ ଉପସ୍ଥାପନା କୌଶଳ ପ୍ରତି ଗଭୀର ଦୃଷ୍ଟି ରଖିବାକୁ ହେବ ।

**ସଂଶ୍ଳେଷ ଓ ଶିକ୍ଷୟିତା** :-

୧- ମାଷ୍ଟର ମାଣିଆ (୰ରାମଚନ୍ଦ୍ର ମାଣିଆ), ନିୟନ୍ତ୍ରିତ ବଜାର ,ଜଟଣୀ ।

୨- ଶ୍ରୀଯୁକ୍ତ କ୍ଷୀରୋଦ ମହାନ୍ତି, ଉତ୍କଳ କୃଷି ମହାବିଦ୍ୟାଳୟ, ଭୁବନେଶ୍ୱର ।

୩ - ଶ୍ରୀଯୁକ୍ତ ରବୀନ୍ଦ୍ର ଷଡ଼ଙ୍ଗୀ (ମିଟୁ'ନା) ତରଙ୍ଗ, ଜଟ୍‌ଣୀ ।

୪ - ଶ୍ରୀଯୁକ୍ତ ଗୋପାଲ ଦେ, ଜଟଣୀ ।

୫ - ଶ୍ରୀଯୁକ୍ତ ବୈରାଗୀ ଶତପଥୀ (ଭାଲୁ କକେଇ)ଉତ୍ତରାୟଣୀ କ୍ଲବ, ଜଟଣୀ ।

**ଶ୍ରଦ୍ଧା ଓ ସହଚର୍ଯ୍ୟା (ମଞ୍ଚ, ଉପସ୍ଥାପନା ଓ ଅଭିନୟରେ)** :-

୧-ଶ୍ରୀଯୁକ୍ତ ସୀତାକାନ୍ତ ଶତପଥୀ ଓ ସାଥୀଗଣ - ଲାଲା ବୀରେନ୍ଦ୍ର ପ୍ରସାଦ ରାୟ,ଖୋର୍ଦ୍ଧା, ସୌଭାଗ୍ୟ ଖୁଣ୍ଟିଆ, ପ୍ରଦୀପ୍ତ ଖୁଣ୍ଟିଆ (ଏବେ ପରଲୋକରେ), ରବୀନ୍ଦ୍ର ନାଥ ଶତପଥୀ(ଏବେ ପରଲୋକରେ), ଅଶୋକ ଶତପଥୀ, ଅସୀତ ଦାସ ପ୍ରମୁଖ , ଉତ୍ତରାୟଣୀ କ୍ଲବ, ଜଟଣୀ ।

୨ - ଶ୍ରୀଯୁକ୍ତ ସନ୍ତୋଷ ମିଶ୍ର ଓ ସାଥୀ, ଆଞ୍ଚଳିକ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱର ।

**ପ୍ରଚୋଦନା ଓ ପ୍ରକାଶନ** :-

ଡ. ଶଶିରଥ ଓ ପ୍ରଫେସର ପ୍ରଫୁଲ୍ଲ କୁମାର ପାଇକରାୟ ।

**ଉତ୍କଣ୍ଠା ଓ ଉତ୍ସାହ** :-

ମୋ ପରିବାର ଯଥା - ଶାଶୁ: ୰ ଚାରୁଲତା ଦାସ, ବୋଉ - ୰ ହାରାମଣୀ ପଟ୍ଟନାୟକ, ପତ୍ନୀ ବିଜୟଲକ୍ଷ୍ମୀ, ଝିଅ-ବର୍ଣ୍ଣି,ପିଙ୍କି, କୁକୁନି, ପୁଅ ସଂସ୍ମିତ ଏବଂ ଜ୍ୱାଇଁ- ତରୁଣ ଓ ସିକୁ ।

**ପାଣ୍ଡୁଲିପି ଓ ସଂଶୋଧନ :-**

୧) ଡ. ଶରତ ଚନ୍ଦ୍ର ରଥ, ପ୍ରଫେସର, ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ ବାଣୀ ବିହାର, ଭୁବନେଶ୍ୱର ।

୨) ପ୍ରଫେସର ଅମରେନ୍ଦ୍ର ନାରାୟଣ ଷଡ଼ଙ୍ଗୀ, ଅଧକ୍ଷ, ମହିଳା ମହାବିଦ୍ୟାଳୟ, ଖୋର୍ଦ୍ଧା ।

୩) ବିଷ୍ଣୁପଦ ଦାଶ, (ପ୍ରାବନ୍ଧିକ) ବିକାଶ ନଗର , ଜଟଣୀ ।

**ରଚନା ଓ ଅଭିନୟ**

ଚରୈବେତି - ସୂଚନାତ୍ମକ ୨୭ ।୯ । ୧୯୭୭ । -- ଦଶହରା ୧୯୭୭ ଉତ୍ତରାୟଣୀ କ୍ଲବ, ଜଟଣୀ

ପରିମାର୍ଜିତ ଓ ପରିବର୍ଦ୍ଧିତ-୭ । ୧୧ ।୧୯୭୮ ।--୧୪ ।୧୨।୧୯୭୮, ରବୀନ୍ଦ୍ର ମଣ୍ଡପ, ଭୁବନେଶ୍ୱର ।

ଇତିବାର୍ତ୍ତା - ୩୧ ।୧୦ । ୮୧ । ଦଶହରା ୧୯୮୧ । -- ଉତ୍ତରାୟଣୀ କ୍ଲବ ଜଟଣୀ ।

ନାଟକ ରଚନା ଓ ମଞ୍ଚସ୍ଥର ଦୀର୍ଘବର୍ଷ ପରେ ନାଟକଦୁଇଟି ପୁସ୍ତକାକାରରେ ପ୍ରକାଶ ପାଇବା ଅବସରରେ ଏହା ସହ ସଂଶ୍ଳିଷ୍ଟ ଉପରୋକ୍ତ ଅନୁଷ୍ଠାନ ଓ ବ୍ୟକ୍ତି ବିଶେଷଙ୍କୁ ମୋର ଗଭୀର କୃତଜ୍ଞତା ଜ୍ଞାପନ କରୁଁଛି ।

**ନାରାୟଣ ପଟ୍ଟନାୟକ**

**ନାଟ୍ୟକାର**




# ଚରୈବେତି

ନାରାୟଣ ପଟ୍ଟନାୟକ







ଚେତନା ଦ୍ରବ୍ୟ

ମନ - ଗୋଲାପ

ପ୍ରାଣ - ଜିନୀଆ

ଜଡ଼ - କନିଅର

| ମାର୍ଗ | ପ୍ରତିଭୂ |
| --- | --- |
| କର୍ମ | ପାର୍ଥ ଦାସ |
| ଭୋଗ | ଅଶୋକ |
| ସନ୍ୟାସ | xxx |
| ଧର୍ମ | ଫା. ଫ୍ରାନ୍ସିସ୍ |
| ସେବା | ଦୀନବନ୍ଧୁ |
| ହିପ୍ପି | ଅବୋଧ |

## ପ୍ରଚ୍ଛଦ ବିଶ୍ଳେଷଣ

# ଚରୈବେତି

## ଚେତନାର ବିବର୍ତ୍ତନ

| ପୃଷ୍ଠଭୂମି | ଫୁଲ | ଚେତନା |
|---|---|---|
| ଅସ୍ପଷ୍ଟ ଶ୍ୱେତ | ହଳଦିଆ ଗୋଲାପ | ଈଶ୍ୱରାଭିମୁଖୀ<br>ପ୍ରେମାନ୍ୱେଷୀ ମନ |
| ମଧ୍ୟମ ସବୁଜ | ନୀଳ ଜିନିଆ | ସାହସପୂର୍ଣ୍ଣ<br>ସହନଶୀଳ ପ୍ରାଣ |
| ଗାଢ଼ ଧୂସର | ଫିକାଲାଲ୍ କନିଅର | ଗୁଣଧର୍ମ<br>ପରିବର୍ତ୍ତନାଭିମୁଖୀ ଶରୀର |

# ଚରୈବେତି

## ଆରମ୍ଭ

ବିକ୍ଷିପ୍ତ ଓ ବହୁବିଧ ଭୟଙ୍କର ଶବ୍ଦ ଭିତରେ ମଞ୍ଚରୁ ପରଦା ଅପସରି ଯାଇଛି ଓ ଦେଖାଦେଇଛି ବିସ୍ଫୋରଣ ସହ ଏକ ଆଲୋକ ଉଦ୍‌ଭାସ । ସେଇ ଉଦ୍‌ଭାସିତ ଆଲୋକ ଉତ୍ସରୁ ଏକ ପୀତ ରଙ୍ଗର ଆଲୋକ ବିନ୍ଦୁ ଧୀରେ ଧୀରେ ଉଜ୍ଜ୍ୱଳତର ହେଉ ହେଉ ଊର୍ଦ୍ଧ୍ୱକୁ ଉଠିଛି । ଶବ୍ଦର କଟୁତା କ୍ରମେ କମି କମି ଆସିଛି । ଅନ୍ତରାଳରୁ ଶୁଣାଯାଉଛି---

ସୃଷ୍ଟି ତତ୍ତ୍ୱରେ ପାର୍ଥିବ ବିବର୍ତ୍ତନ ଧାରାର ଯେଉଁ ଅବ୍ୟାହତ ପ୍ରବାହ ଏବଂ ଅନନ୍ତ ଚେତନା ରାଶିର ଯେଉଁ ପର୍ଯ୍ୟାୟ କ୍ରମ ପରିପ୍ରକାଶ ତାରି ଉପସ୍ଥିତ ପରିଣତି ହେଉଛି ମାନବ । ଚେତନାର ମୁଖ୍ୟସ୍ତର ତ୍ରୟ --ଜଡ, ପ୍ରାଣ ଏବଂ ମନର କ୍ରମାବତରଣ ଏବଂ ପରସ୍ପର ନିର୍ଭରଶୀଳତାରେ ଐକ୍ୟ ପ୍ରତିଷ୍ଠାର ଯେଉଁ ପ୍ରକାଶିତ ପରିଣାମ ତାହା ହିଁ ଆମମାନଙ୍କ ମାନବୀୟ ଭୂମି - ଅଦ୍ୟାବଧି ଉନ୍ମୋଚିତ ଦୃଶ୍ୟମାନ ଚେତନାର ସର୍ବୋତ୍ତମ ସୃଷ୍ଟି

ଏ ଚେତନା ତ୍ରୟର ସମ୍ମେଳନରେ, ଐକ୍ୟ ପ୍ରତିଷ୍ଠାରେ ଆରମ୍ଭ ହୁଏ ପ୍ରକୃତିର ଅନ୍ତର୍ନିହିତ ଅନନ୍ତ ଉତ୍ସ ଓ ଚିରନ୍ତନ ସତ୍ୟର ଅନ୍ୱେଷଣ, ମାନବିକ ଏଷଣା । ଏହି ଇପ୍ସିତ ସତ୍ୟର ରୂପକଳ୍ପ ହେଉଛି ଏକ ସୁରଭିତ ଏବଂ ଆଲୋକିତ ପଦ୍ମ । ସେହି ପଦ୍ମ ପ୍ରାପ୍ତିର ଯେଉଁ ମାନବିକ ପ୍ରଚେଷ୍ଟା, ତାର ମଞ୍ଚ ରୂପଦେଇ ଯେଉଁ ଚରିତ୍ର ତିନୋଟି ଚେତନା ତ୍ରୟର ପ୍ରତିନିଧିତ୍ୱ କରି ମଞ୍ଚାବଲୋକିତ ହେବେ ସେମାନେ ହେଲେ

ଜଡ଼ ଶ୍ରୀ ----

ପ୍ରାଣ ଶ୍ରୀ ----

ଏବଂ ମନ ଶ୍ରୀ----

ଏ ମାନବିକ ପ୍ରଚେଷ୍ଟାର ମାର୍ଗ ଅସଂଖ୍ୟ ! ସମ୍ମିଳିତ ଏ ଚେତନା ବ୍ୟକ୍ତି ସ୍ୱାତନ୍ତ୍ର୍ୟ ମାଧ୍ୟମରେ ବହୁଧା ବିଭକ୍ତ । ବହୁ ବିଭାବରେ ପର୍ଯ୍ୟବେସିତ । ଏହି ମୁଖ୍ୟ ଛଅଟି ଧାରା,

ନିର୍ଣ୍ଣିତ ଛଅଟି ମାର୍ଗ ହେଲା - ପ୍ରଥମରେ କର୍ମ,ଦ୍ୱିତୀୟରେ ଭୋଗ, ତୃତୀୟରେ ସନ୍ନ୍ୟାସ, ଚତୁର୍ଥରେ ଧର୍ମ, ପଞ୍ଚମରେ ସେବା ଏବଂ ଶେଷ ଷଷ୍ଠରେ ଅସନ୍ତୁଷ୍ଟ - ଅମୀମାଂସୁର ମାର୍ଗ ହିପିଡ୍ । ଏହି ଷଡମାର୍ଗ ମାଧମରେ ମାନବ ଏଷଣା ଅବ୍ୟାହତ ରୁହେ ଅସୀମ ମହାକାଳର ଏକ ନିର୍ଦ୍ଧାରିତ ସୀମାରେଖା ପର୍ଯ୍ୟନ୍ତ । ମଳିନ ଆବରଣ ବହନ କରି ସେ ମିଳିତ ଚେତନାର ସମସ୍ତ ପ୍ରଚେଷ୍ଟା ପର୍ଯ୍ୟବସିତ ହୁଏ ବ୍ୟର୍ଥତା ଭିତରେ ଏବଂ ସମସ୍ତ ମାର୍ଗର ପରିଣାମ ହୁଏ - ବିଫଳତା ।

ଏହି ଛଅଟି ମାର୍ଗର ପ୍ରତିନିଧିତ୍ୱ କରି ଯେଉଁ ଛଅଟି ଚରିତ୍ର ମଞ୍ଚାବଲୋକିତ ହେବେ ସେମାନେ ହେଲେ -

କର୍ମ ପାଇଁ ଶ୍ରୀ ---
ଭୋଗ ପାଇଁ ଶ୍ରୀ ---
ସନ୍ନ୍ୟାସ ପାଇଁ ଶ୍ରୀ ---
ଧର୍ମ ପାଇଁ ଶ୍ରୀ ---
ସେବା ପାଇଁ ଶ୍ରୀ ----
ଏବଂ ହିପି ପାଇଁ ଶ୍ରୀ ---

ନିର୍ବାଣ ମାର୍ଗୀ ସନ୍ନ୍ୟାସୀ ଏ ସଂସାର ସହ ଅସମ୍ପୃକ୍ତ । ତେଣୁ ନାଟକର ସାଂସାରିକ ପ୍ରଚେଷ୍ଟା ପାଇଁ ଉଦ୍ଦିଷ୍ଟ ଆଖ୍ୟାୟିକା ଅଂଶରେ ତାର ଭୂମିକା ନାହିଁ । ଅନ୍ୟ ପାଞ୍ଚଟି ଚରିତ୍ର ସେମାନଙ୍କ ମାର୍ଗାନୁଧାବନ କରି ପରିଣାମରେ ବିଫଳତା ସ୍ୱୀକାର କରନ୍ତି ଏବଂ ନିଜର ସେ ମିଳିତ ଚେତନା - ମାନବ ଚେତନା ବିଶ୍ଳେଷଣ କରି ବସେ । ଚେତନାତ୍ରୟର ସ୍ତର ବିଶେଷରେ ଦୋଷ ଦୁର୍ବଳତାକୁ ସ୍ୱତନ୍ତ୍ର ଭାବରେ ଅନୁଶୀଳନ କରି ପରସ୍ପର ଦୋଷାରୋପ , ଅବଜ୍ଞା ଓ ଅନୁଜ୍ଞା ମଧରେ ଆତ୍ମାନ୍ୱେଷଣର ଅଭିନବ ନିର୍ଦ୍ଦେଶ-ଚରୈବେତି । ସେମାନଙ୍କ ଗତିରେ ଦେଖାଦିଏ ଭିନ୍ନ ଦିଗ, ଭିନ୍ନ ରୂପ । ଏ ଉନ୍ମେଷିତ ନବପ୍ରଜ୍ଞାର ଏଷଣାରେ ସେମାନଙ୍କ ମଳିନ ଆବରଣ ବିଦୁରିତ ହୁଏ । 'ଚରୈବେତି'ର ନିର୍ଦ୍ଦେଶ ସେମାନଙ୍କୁ ଉଦ୍‌ଜୀବିତ କରେ । ସେମାନେ ମିଳିତ ଭାବେ

କରନ୍ତି ସଂକଳ୍ପ, କରନ୍ତି ପ୍ରତ୍ୟାଖ୍ୟାନ ଓ କରନ୍ତି ସମର୍ପଣ । ଏ ନବ ପ୍ରଚେଷ୍ଟା - ସତ୍ୟାନ୍ୱେଷଣକୁ ସଫଳ କରି ରଙ୍ଗ ରୂପ ଓ ମହକର କ୍ରମ ପ୍ରକାଶ ମାଧମରେ ସେ ରୂପକଳ୍ପ ପଦ୍ମ ପରିସ୍ଫୁଟ ହୋଇଉଠେ  ଏବଂ ଆଣିଦିଏ ଉତ୍କର୍ଷ ମାନବ ଚେତନାରେ ସଫଳକାମର ଆହ୍ୱାନ --

ଓଁ ଆନନ୍ଦମୟୀ, ଚୈତନ୍ୟମୟୀ, ସତ୍ୟମୟୀ ପରମେ

ଏହି ମାନବ ଚେତନାର କ୍ରମ ବିକାଶ ଓ ପରିଣାମର ପଟ୍ଟଭୂମି --- ସେ ଜଡ଼୍ ଚେତନାର ପ୍ରତିନିଧି  ଆପଣମାନଙ୍କ ଆଗରେ -----

(ମଞ୍ଚର ମଧ ଭାଗରେ ଆଲୋକ ଆବର୍ତ୍ତ ଉଦ୍‌ଭାସିତ  ହୋଇଉଠିଛି । ପୀତାଲୋକ  ମଞ୍ଚର  ସମ୍ମୁଖ  ତଥା ଉର୍ଦ୍ଧାଂଶରେ ସ୍ଥିର ହୋଇଛି । ସମସ୍ତ ଶବ୍ଦ ସ୍ତବ୍ଧ ହୋଇଛି । ଆଲୋକ ଆବର୍ତ୍ତ ମଧରେ ସେ ପୀତାଲୋକକୁ ଆଶ୍ଚର୍ଯ୍ୟାନ୍ୱିତ - ନିଷ୍ପଲକ ଦୃଷ୍ଟିରେ ନିଶ୍ଚଳ ହୋଇ ଚାହିଁ ରହିଛି ଜଡ଼୍  । କଳା ରଙ୍ଗର ପୋଷାକ ଓ ଅଣ୍ଟାରେ କଳାରଙ୍ଗର ଚଉଡା ବେଲ୍ଟ । ନିସ୍ତବ୍ଧତା ଭଙ୍ଗ କରି ଡ୍ରମ ବାଜାର ବିଟ ସହ ଉକ୍ତ ଆଲୋକ ବିନ୍ଦୁକୁ ଚାହିଁ ପ୍ରବେଶ କରିଛି ପ୍ରାଣ । ଲାଲ ରଙ୍ଗର ପୋଷାକ ଓ ଅଣ୍ଟା ଉପରେ କଳା ଉପରେ ଲାଲ ପଟି ଦିଆ ଚଉଡା ବେଲ୍ଟ ।  ଆଲୋକ ଆବର୍ତ୍ତ ମଧରେ ପ୍ରବେଶ କରି ଜଡ଼କୁ ନିରୀକ୍ଷଣ କରିଛି ଓ ତାକୁ ହଲେଇ ଦେଇ ପ୍ରଶ୍ନ କରିଛି)

ପ୍ରାଣ -	କିବେ, ବୋକାଙ୍କ ପରି ଚାହିଁଛୁ କଣ  ?

ଜଡ -	(ସଚେତନ ହୋଇଉଠିଛି ଓ ପ୍ରାଣକୁ ଚାହିଁ ମୁଣ୍ଡ ହଲାଇ ସ୍ୱାଗତ କରିଛି । ଏଇ ଅବସ୍ଥାରେ ସେ ପୀତାଲୋକ ଏକ ଆଲୋକିତ ପଦ୍ମଫୁଲରେ ପରିଣତ ହୋଇଛି)

ପ୍ରାଣ -	କଣ, ଫୁଲଟା ଭାରି ସୁନ୍ଦର ହୋଇଛି ନା  ?

ଜଡ -	(ଫୁଲକୁ ଦେଖିପାରି) ଏଇଟା ଯେ ଫୁଲ.... ?

ପ୍ରାଣ -	ଫୁଲ ନୁହେଁ ତ ଆଉ  ଦେଖୁଥିଲୁ କଣ  ?

ଜଡ଼ - (ଆଖି ମଳି ମଳି) ମୁଁ ...ମୁଁ କଣ ଦେଖୁଥିଲି ?

ପ୍ରାଣ - ଜଡ, ନିର୍ଜୀବ, ବୋକା ।

ଜଡ଼ - ମୁଁ ଭାବିଥିଲି ....ସେଇଟା ଗୋଟାଏ ଆଲୋକ, ଖାଲି ଆଲୁଅ ।

ପ୍ରାଣ - ଓଃ ତୁ ଭାବିଥିଲୁ ? ଛାଡ୍ । ମୁଁ ବି ତାକୁ ଦେଖି ଧାଇଁ ଆସିଛି । ସତରେ ଭାରି ସୁନ୍ଦର ହୋଇଛି ସେ ଫୁଲଟା ।

ଜଡ଼ - କଣ କରିବା ?

ପ୍ରାଣ - (ଚିନ୍ତା କରି) ତୁ...ତୁ ଡେଇଁ ପାରିବୁ ?

ଜଡ଼ - ଡେଇଁବି ?

ପ୍ରାଣ - ହଁ, ଖୁବ୍ ଜୋରରେ । ଯେମିତି ଆମେ ତାକୁ ....

ଜଡ଼ - ଧରି ଆଣିବା ?

ପ୍ରାଣ - ହଁ ଧରି ଆଣିବା । ମୁଁ ତତେ ଧରୁଛି....ତୁ ଡେଁ....

ଜଡ଼ - ଆଚ୍ଛା ।

(ପ୍ରାଣ ଜଡ଼କୁ ଧରିବ ଓ ଜଡ଼ ପ୍ରସ୍ତୁତ ହୋଇ ଡେଇଁବାକୁ ଆରମ୍ଭ କରିବ । ବହୁ ରଙ୍ଗର ଆଲୋକର କୁହେଳି ମଧରେ ଶୁଣା ଯାଉଥାଏ)

ପ୍ରାଣ - ହଁ..ହଁ ଡେଁ.. ଡେଁ ସେଠିକି ଚାଲ ଆଗକୁ ।

ଜଡ଼ - ଆଗକୁ ?

ପ୍ରାଣ - ହଁ ସେଠିକି ... ସେଇ ଆଗକୁ ଯାଇ ଥରେ ଡେଇଁଲେ ତୋ ହାତ ପାଇଯିବା ....ହଁ ବାସ୍ । ଏଥର ଡେଇଁଲୁ । ଟିକେ ଜୋରରେ ... ଆଉ ଟିକେ ଜୋରରେ ....ଜୋରରେ ....ଜୋରରେ

(ସମ୍ପୂର୍ଣ୍ଣ ଆଲୋକିତ ହେବ ଓ ଜଡ଼ ହାଲିଆ ହୋଇ ଠିଆ ହୋଇଯାଇଛି )

ଜଡ଼ - ନାଁ, ଆଉ ପାରିବି ନି ।

ପ୍ରାଣ - ପାରିବୁନି ? ଜଡ଼, ନିର୍ଜୀବ, ବୋକା । ତୋ ଦେହରେ ଏତେ ବଳ ଅଥଚ.... ଫୁଲଟାକୁ ଆଣି ନପାରିଲେ , ଆମେ ଏଠିକି ଆସିଛେ କାହିଁକି ?

ଜଡ଼ - ମୋର ସେ ଫୁଲ ଦରକାର ନାହିଁ ।

ପ୍ରାଣ -	ଧେତ୍ ,ବୋକା । ଏଇ ସେଠିକି ଚାଲ । ଥରେ ଡେଇଁଲେ ହାତ ପାଇଯିବ । (ତାକୁ ଟାଣିବାକୁ ଚେଷ୍ଟା କରିଛି)

ଜଡ଼ -	ନା, ଆଉ ହେବନି ।

(ପ୍ରାଣକୁ ଛାଡି ଦେଇଛି ଓ ପ୍ରାଣ ପଡୁ ପଡୁ ରହି ଯାଇଛି । ଏଣେ ତେଣେ ଅନାଉଥିବା ବେଳେ ବେହେଲାର ସ୍ୱର ସହ ପ୍ରବେଶ କରିଛି - ମନ । କଳା,ଲାଲ ଓ ଧଳା ପଟିର ବେଲ୍ଟ । ତାକୁ ଦେଖି ପ୍ରାଣ ଜଡ଼କୁ ଇଙ୍ଗିତରେ ଦେଖାଇଛି ଓ ଦୁହେଁ ଆଗନ୍ତୁକକୁ ଅନାଇ ରହିଥିବା ବେଳେ ମନ ପଦ୍ମ ଫୁଲର ବାସ୍ନାରେ ବିଭୋର ହୋଇଉଠୁଥିବାର ଅଭିନୟ କରି ପ୍ରବେଶ କରିଛି ଓ ଆଲୋକ ବେଷ୍ଟନୀ ମଧ୍ୟରେ ଏ ଦୁହିଁକି ଦେଖି ଅନୁଧ୍ୟାନ କରିଛି ଓ ପ୍ରଶ୍ନ କରିଛି---)

ମନ -	କିରେ, ଏମିତି ଧଇଁ ସଇଁ ହୋଇ ଠିଆ ହୋଇଛ କାହିଁକି ?

ଜଡ଼ -	ଏ ଆଳୁଅ...

ପ୍ରାଣ -	ଏ ଫୁଲ....

ମନ -	ବାସ୍ନା ଫୁଲ । ଏ ଫୁଲର କି ମହକ ....।

ଜଡ଼ -	ବାସ୍ନା ( ଆଘ୍ରାଣ କରିବା )

ପ୍ରାଣ -	ମହକ ? (ଆଘ୍ରାଣ କରିବା)

ମନ -	ହଁ ବାସ୍ନା , ମହକ (ସମସ୍ତେ ଆଘ୍ରାଣ କରି ବିଭୋର ହେବା )

ଜଡ଼ -	ସତରେ... ଏ ଆଳୁଅ.....

ପ୍ରାଣ -	ଜଡ, ବୋକା । ଆଳୁଅ ନୁହେଁ - ଫୁଲ । ବାସ୍ନା ଫୁଲ । ଦେଁ, ଆଉ ଛାଡିବାର ନୁହେଁ ।

(ପ୍ରାଣକୁ ଧରିବା ଓ ଜଡ଼ ଡେଇଁବାକୁ ଆରମ୍ଭ କରିବା ବେଳେ ମନ ସେମାନଙ୍କୁ ଧରିନେଇ )

ମନ -	(ପ୍ରାଣକୁ) ସେଇଟା ଜଡ଼, ନିର୍ଜୀବ,ବୋକା । ଆଉ ତ'ୁଟା ମୂର୍ଖ,ପଶୁ । ଏମିତି ଯେତେ ଡେଇଁଲେ ବି କିଛି ହେବନି ।

ଜଡ -	କିଛି ହେବନି ।...ମୁଁ ତ ସେୟା....

ପ୍ରାଣ -	ତେବେ ? ତେବେ କଣ କରିବା ?

ମନ -	ମୂର୍ଖ, ବୁଦ୍ଧି ଦରକାର । ଖାଲି ବଳ କିମ୍ବା ଉତ୍ସାହରେ କିଛି ହେବନି । ସେ ଫୁଲ କେବେ ବି ମିଳିବନି ।

ଜଡ଼ ଓ ପ୍ରାଣ - ବୁଦ୍ଧି ?

ମନ -	ହଁ ବୁଦ୍ଧି । କୌଶଳ । ଉପାୟ - ବଡ଼ କାମ କରିବାର ସହଜ ଉପାୟ । (ଜଡ଼ ଓ ପ୍ରାଣ ଦୁହେଁ ଦୁହିଁଙ୍କୁ ଚାହିଁ ସହମତ ହେବା )

ଜଡ -	କି ବୁଦ୍ଧି ?

ପ୍ରାଣ -	ତୁମେ ଜାଣ ? ବତାଅ ।

ମନ -	ମୁଁ ଯେମିତି କହିବି ତୁମେ ସେମିତି କରିବ ? ଜଡ଼ ଓ ପ୍ରାଣ -(ସମ୍ମତ ହେବା )

ମନ -	(ପ୍ରାଣକୁ)ସେଇଟା ଜଡ଼- ଅଳସୁଆ, ଯାହା କରିବାକୁ ହେବ ମୁଁ ବତେଇବି। ହେଲେ ତୁ କରେଇବୁ ।

ପ୍ରାଣ -	ଠିକ୍ ଅଛି । ତା ଦେହରେ ମୋ ଅପେକ୍ଷା --- ମୋ ଅପେକ୍ଷା କାହିଁକି, ଆମ ଦୁହିଁଙ୍କ ଅପେକ୍ଷା ବି ବଳ ବେଶି । ନିଶ୍ଚୟ କରିବ ।

ଜଡ -	କଣ କରିବି ?

ପ୍ରାଣ -	(ମନକୁ) ନହେଲେ ମୁଁ ଜୋର କରି କରେଇବି । କଣ ବେ ବୋକା ?

ମନ -	ମୂର୍ଖ । ଏମିତି କଣ କାମ କରାଯାଏ ? ସେ କାମ କରିବ୍ , ଅଥଚ....

ଜଡ଼ -	ଆଗ କଣ କରିବାକୁ ହେବ - କୁହ ।

ମନ -	କହୁଛି ।

ପ୍ରାଣ -	ସତରେ ତୁ ଆସିନଥିଲେ ....

ମନ -	ଛାଡ଼, ସେ କଥା । କଣ ଏବେ କରିବାକୁ ହେବ ଶୁଣ । ଏତେ ଦୂରରୁ ଏମିତି ଯେତେ ଡେଇଁଲେ ବି ଆମେ ତାକୁ ପାଇ ପାରିବାନି । ଆମକୁ ତା ପାଖକୁ ଯିବାକୁ ପଡ଼ିବ । ସେଥିପାଇଁ ପ୍ରଥମେ ଆମକୁ ରାସ୍ତା ଖୋଜିବାକୁ

ପଡ଼ିବ । ସେ କେଉଁଠି ଅଛି, କିପରି ଅଛି. ବୁଝିବାକୁ ପଡ଼ିବ । ଏତେ ଦୂରରୁ ତାବିଷୟରେ କିଛି ନଜାଣି ଯେତେ ଡେଇଁଲେ ବି କିଛି ଫଳ ହେବନି । ସର୍ବୋପରି ଆଗକୁ ବିଚାର କରି ଦେଖିବାକୁ ହେବ, ତାକୁ ଆଣିଲେ ଆମର ଲାଭ ହେବ ନା, କ୍ଷତି । ପଦ୍ମ ଫୁଲ ପରି ଦେଖାଯାଉଛି , ବାସ୍ନାଟା ବି ସେମିତି

ପ୍ରାଣ - ତେବେ ତ ସେଠି ପାଣି ଥିବ ?

ଜଡ଼ - ପଙ୍କ ବି ପଡ଼ିପାରେ ..... ?

ମନ - ବୋକା, ମୂର୍ଖ । ଆଗ ବାଟ ମିଳୁ । ସେଠିକି ଚାଲ, ତା ପରେ ଦେଖିବା । ମୁଁ ବାଟ ଦେଖାଉଛି - ଆସ ।

(ମନ ଚାଲିବା ନିର୍ଦ୍ଦେଶ ଦେଇଛି ଓ ତିନିହେଁ ଏକ ନିର୍ଦ୍ଦିଷ୍ଟ ଭଙ୍ଗୀରେ ଏକ ନିର୍ଦ୍ଦିଷ୍ଟ ତାଳରେ ଡାହାଣକୁ(Anti clockwise)ଘୁରିବାକୁ ଆରମ୍ଭ କରିଛନ୍ତି ସେଇ ଆଲୋକ ଆବର୍ତ୍ତ ଭିତରେ । ସେମିତି ଘୁରୁଘୁରୁ.....)

ଜଡ - ସେ ଫୁଲ ।

ପ୍ରାଣ - ସେ ଆଲୋକ ।

ମନ - ସେ ମହକ ।

ସମସ୍ତେ - କାହିଁ ? କାହିଁ ? ।

(ଆଲୋକର ଉଜ୍ଜ୍ୱଳତା କମି ଆସିଛି । ଧୀରେ ଧୀରେ ସେମାନେ ଅନ୍ତରାଳକୁ ଚାଲିଯାଇଛନ୍ତି । ସେଇ ତାଳ ଓ ଗତିରେ ପ୍ରବେଶ କରିଛନ୍ତି ଛଅଟି ଚରିତ୍ର ଓ ଆଲୋକ ଆବର୍ତ୍ତ ଭିତରେ ଘୁରିବାକୁ ଆରମ୍ଭ କରିଛନ୍ତି । ପଦ୍ମଫୁଲଟି ଅପସରି ଯାଇଛି । ମଧ୍ୟାଲୋକ ସ୍ପଷ୍ଟ ହୋଇଛି । ସେମାନେ ଘୁରୁ ଘୁରୁ -----)

୧ମ - ସେ ଫୁଲ ।

୨ୟ - ସେ ପଦ୍ମ ।

ଉଭୟେ - କାହି ? କାହିଁ ?

୩ୟ - ସେ ରଙ୍ଗ ।

୪ର୍ଥ - ସେ ରୂପ ।

ଉଭୟେ - କାହିଁ ? କାହିଁ ?

୫ମ - ସେ ବାସ୍ନା ।

୬ଷ୍ଠ - ସେ ମହକ ।

ଉଭୟେ - କାହିଁ ?କାହିଁ ?

ସମସ୍ତେ - (ଏକ ସମୟରେ) କାହିଁ? ଗଲା କୁଆଡେ ?

(ସମସ୍ତେ ବିକ୍ଷିପ୍ତ ହୋଇ ଅନ୍ଧକାର ଅଂଶରେ ଖୋଜିବା ଓ କ୍ଲାନ୍ତ ହୋଇ କିଛି ସମୟ ପରେ ପୁଣି ସେଇ ଆଲୋକ ଆବର୍ତ୍ତ ମଧ୍ୟକୁ ଫେରି ଆସି ଘୂରି ବୁଲିବା )

୧ମ ଓ ୨ୟ - ସେ ଫୁଲର ରୂପ ଥିଲା !

୩ୟ ଓ ୪ର୍ଥ - ସେ ଫୁଲର ରଙ୍ଗ ଥିଲା

୫ମ ଓ ୬ଷ୍ଠ - ସେ ଫୁଲର ଗନ୍ଧ ଥିଲା !

ସମସ୍ତେ - ଖୋଜ --ଖୋଜ ।(ପରସ୍ପରକୁ ଚାହିଁ ) -ବାଟ କାହିଁ ? କଣ ସେ ମାର୍ଗ ?

(ସମସ୍ତ ଚରିତ୍ର ନିଶ୍ଚଳ ହୋଇଯିବା ଓ ମଧ୍ୟାଂଶ ଆଲୋକ ଲିଭିଯାଇଛି । ଗତିର ଶବ୍ଦ ବନ୍ଦ ହୋଇଯାଇଛି । କ୍ଷଣକ ପରେ ସମ୍ମୁଖାଂଶ ଆଲୋକିତ ହୋଇଯାଇଛି (Separate light zone) ପ୍ରଥମ ଚରିତ୍ର ଚାଲିଆସିଛି ଏବଂ ଆଲୋକିତ ସମ୍ମୁଖ ଭାଗକୁ ଓ ଧ୍ୟାନ ଚୂର୍ଣ୍ଣ ଥିବାର ଅଭିନୟ କରୁ କରୁ ଗୀତ ଗାଇଛି ।

୧ମ - (ଗୀତ)

ସେ ଜନକ ରାଜା ଦୁହିତାରେ

ଏ ଲାଜନ ଝିଅରେ...ସୀତା

ଧାନ ଗୋଟି ଗୋଟି ..... ଦେଇଥିଲେ ଛାଟି ....

ତୋଳିବ ଗଜ ମୁକୁତା ।

ଏଇ ବଇଶାଖ ଖରା ଟାଣରେ .....

ସେ ଭାଙ୍ଗିବ ଧାରା ଶ୍ରାବଣ ,

ବୁଣିଥିଲେ ମାଣେ ତୋଳିବ ଭରଣେ.....

ନଥିବ ଆଉ କଷଣ ।

(ମଧ୍ୟାଂଶ ଆଲୋକିତ ହୋଇଛି ଓ ଅବଶିଷ୍ଟ ୫ଜଣ ବିଦ୍ରୁପ କରି ହସି ଉଠିଛନ୍ତି)

୧ମ - ଖେଁ,ଖେଁ କଣ ହେଉଛ ବେ ? ମୁଁ ମୋ' ରାସ୍ତା ଖୋଜିବି । ତମ ସାଙ୍ଗରେ ମୁଁ ଆଉ ଡେଇଁ ପାରିବିନି । ରୂପ ଗଲା, ରଙ୍ଗ ଗଲା । ଶେଷରେ ସେଇଟା ଥିଲା କି ନଥିଲା ; ଆଉ ମନେ ପଡୁନି ।

ଅନ୍ୟମାନେ - ଏବେ ତେବେ ଆପଣ କଣ କରିବେ ?

୧ମ - କଣ କରୁଛି ଦେଖିପାରୁନ ? କାମ, କାମ । ମୁଁ ମୋର କାମ କରିଯିବି । ଯାହାରରୂପ ଆଉ ନାହିଁ, ରଙ୍ଗ କଣ ମନେ ପଡୁନି । ଯାହାର ବାସ୍ନା, ବାସ୍ନା... ?

(ହଠାତ୍ ତଳୁ ମୁଠାଏ ମାଟି ନେଇ ଶୁଙ୍ଘିଛି ଓ ବିଭୋର ହୋଇଉଠିଛି) ଏ ବାସ୍ନା, ପହିଲି ଆଷାଢ଼ରେ ମାଟିର ବାସ୍ନା । ମାଟି ମା'ର ବାସ୍ନା । ଏହା ହିଁ ମୋର ଜୀବନ । ଏହା ହିଁ ମୋର ଜୀବିକା । ଆସ ତୁମେ ସମସ୍ତେ ଆସ, ଦେଖ ଶୁଙ୍ଘ । ଏଇ ସେଇ ବାସ୍ନା ନା ? (ସମସ୍ତେ ଆାଗେଇ ଆସି ତ ହାତରୁ ମାଟି ଶୁଙ୍ଘି ଘୃଣାରେ କହି ଉଠିଛନ୍ତି । ) - ଛିଃ, ଛିଃ ।

୧ମ - ତୁମେ ସବୁ ତୁମ ଇଚ୍ଛା ଯାହା କର । ମୁଁ କିନ୍ତୁ ମୋ' କାମ କରିବି । କାମ, କର୍ତ୍ତବ୍ୟ, କେବଳ କର୍ତ୍ତବ୍ୟ । ମୁଁ ମୋ କାମ କରିଯିବି । କର୍ମ ହିଁ ଈଶ୍ୱର -- କର୍ମ ହିଁ ଈଶ୍ୱର । (କର୍ମ ହିଁ ଈଶ୍ୱର, ଆବୃତ୍ତି କରି କରି ପ୍ରସ୍ଥାନ)

୨ୟ - କାମ ?

୩ୟ - ବୁଦ୍ଧୁ ।

୪ର୍ଥ - ମୂର୍ଖ ।

୫ମ - ବୋକା ।

୬ଷ୍ଠ - ପାଗଳ ।

ସମସ୍ତେ - (ହସି ଉଠିଛନ୍ତି ଓ ଆବର୍ତ୍ତ ମଧରେ ପୂର୍ବପରି ଘୁରି ବୁଲିଛନ୍ତି । ଘୁରୁ ଘୁରୁ)- ଭାବ । ଖୋଜ । ରାସ୍ତା ମିଳିଯିବ ।

(ସମସ୍ତେ ନିଶ୍ଚଳ ହୋଇଯାଇଛନ୍ତି । ସମ୍ମୁଖାଂଶ ଆଲୋକ ଜଳି ଉଠିଛି ଓ ସେଠି ପ୍ରବେଶ କରିଛି ଦ୍ୱିତୀୟ ଚରିତ୍ର । ନିଜକୁ ସଜାଡ଼ି ନେଇ -)

୨ୟ - କାମିନୀ ତାର ରୂପ । କାଞ୍ଚନ ତାର ରଙ୍ଗ । ଆଉ ସୁରା--। ସୁରା- ? (ପକେଟରୁ ମଦ ବୋତଲ ଆଣି ଶୁଙ୍ଘିବାର ଅଭିନୟ କରି) ଠିକ୍, ଏଇ, ଏଇ ତ ତାର ବାସ୍ନା । (ମଦ ପିଇ ସନ୍ତିରେ ଦୀର୍ଘଶ୍ୱାସଟେ ନେଇ) ଏତେ ସମ୍ପଦର ଅଧିକାରୀ ମୁଁ । ଏହାର ସୁରକ୍ଷା, ଏହାର ପରିଚର୍ଯ୍ୟାର ଦାୟିତ୍ୱ ମୋର । ମୁଁ - ମୁଁ ଏକମାତ୍ର ଯୋଗ୍ୟ । ଲକ୍ଷ୍ମୀଙ୍କର ବରପୁତ୍ର ମୁଁ । ଆସ କୁବେର । ଆସ ତ୍ରେତୟାର ବିଂଶବାହୁ, ଆସ; ଆସ । ଆସ ଦ୍ୱାପରର ଦୁର୍ଯ୍ୟୋଧନ । ଆସ, ଆସ ମୁଁ ପ୍ରସ୍ତୁତ । ମୋ ସହ ପ୍ରତିଯୋଗିତା କର । ଦେଖ, ଶିଖ । ବୁଝି ନିଅ ତୁମମାନଙ୍କର ଯେଉଁ ଦମ୍ଭ ଥିଲା , ଯେଉଁ ଗରିମା ଥିଲା , ତାହା ଚୂର୍ଣ୍ଣ ବିଚୂର୍ଣ୍ଣିତ ହେଲା କାହିଁକି ? କଣ ତ୍ରୁଟି ଥିଲା ସେଥିରେ -----କୁବେର ! ତୁମେତ ଇନ୍ଦ୍ରଙ୍କ ସାମାନ୍ୟ ଚାକର । ଦଶାନନ, ବିଂଶବାହୁ, ସ୍ୱର୍ଣ୍ଣଲଙ୍କେଶ୍ୱର । ପାରିଲନି ନିଜ ଭ୍ରାତ ବିଭୀଷଣେ ନିଜ ବଶେ ରଖି । ତୁମେ ଦୁର୍ଯ୍ୟୋଧନ । ଜ୍ୟେଷ୍ଠାଂଶରେ ଅର୍ଦ୍ଧାଧିକ ଅଂଶୀଦାର ପାଞ୍ଚପାଣ୍ଡବଙ୍କୁ ପାଞ୍ଚଖଣ୍ଡି ପଡା ମାତ୍ର ଦେଇ ନିଜ ଅଂଶ ଚୁକ୍ତି କରିନେବା ଉଚିତ କି ଅନୁଚିତ ପାରିଲନି ବୁଝି । ବ୍ୟବସାୟେ ଲାଭକ୍ଷତି ମୀମାଂସାର ହୀନ ଦୂର ଦୃଷ୍ଟି । ଆଉ ପୁଣି କେତେ ବୋକା ତୁମେ ; କୃଷ୍ଣଟାକୁ ପାରିଲନି ହାତ କରି - ବରିନେଲ ବଳରାମ,ମୁଣ୍ଡା, ହୁଣ୍ଡା ଲଙ୍ଗଳଭୂଷଣ ? (ମଧାଂଶ

ଆଲୋକିତ ହୋଇଛି ଓ ଅବଶିଷ୍ଟ ୪ଜଣ ଆଶ୍ଚର୍ଯ୍ୟରେ ପଚାରିଛନ୍ତି)

୨ୟ - - କଣ କରୁଛ ? କିଏ - କିଏ ତମେମାନେ ? ତୁ, ତା, କରୁଛ ? ସାହସତ କମ ନୁହେଁ ? ଜାଣ, ମୁଁ କଣ କରିପାରେ ? ଚିହ୍ନିଛ ମୋତେ ?

୩ୟ - ତୁ --

୪ର୍ଥ - ତୁମେ --

୫ମ - ନା ଆପଣ ।

୬ଷ୍ଠ - ହଁ ଆପଣ । ଆପଣ ସେ ନୁହଁନ୍ତି ?

୨ୟ - କିଏ ? କାହାକୁ ଖୋଜୁଛ ତୁମେ ସବୁ ?

ସମସ୍ତେ- ଆମେ ଖୋଜୁଛୁ ---

୩ୟ - ସେ ବାସ୍ନା ---

୪ର୍ଥ - ସେଇ ଆଲୋକ ---

୫ମ - ସେଇ ରୂପ --

୬ଷ୍ଠ - ସେଇ ପଦ୍ମଫୁଲ । ଯାହା ଆପଣ ବି ଦିନେ । ---

୨ୟ - (ହସିଉଠି) ଖୋଜୁଥିଲି ? ମୁଁ ଯାହା ଖୋଜୁଥିଲି ପାଇଛି । ଆସ । (୬ଷ୍ଠ ଆସିବା ଓ ୨ୟ ନିଜ ଗଳାରେ ପିନ୍ଧିଥିବା ଏକ ମାଳ ଦେଖାଇ ) ଏ ହେଉଛି ଇନ୍ଦ୍ରଛନ୍ଦ ମୋତିମାଳ । ଏ ମାଳରେ, ଏ ଗଜମୋତିକୁ ନେଇ ଏକହଜାର ଆଠଟି ମୋତି ରହିଛି । ଦାମ୍ କେତେ ହେବ ଜାଣୁ ? ନା' ଯା ଦାମ୍ କହିବାକୁ ଜହ୍ଲୁରୀ ନାହାନ୍ତି । ସର୍ବଶ୍ରେଷ୍ଠ ସୌଭାଗ୍ୟଶାଳୀର ସଂକେତ । (୫ମକୁ ଇଙ୍ଗିତରେ ଡାକି) ଆଉ ତୁମେ । ତୁମେ ଆସ । (୫ମ ଆସିବା ଓ ୨ୟ କାଞ୍ଚନିକ ନାରୀର କାନ୍ଧରେହାତ ରଖି ଓ ତାକୁ ଦେଖାଇ) ଏ ହେଉଛନ୍ତି ମିସ୍, ଓ୍ୱାର୍ଲ୍ଡ୍ । ମିସ୍ ୟୁନିଭର୍ସ ବି କହିପାର ।

ତନ୍ୱୀ ତରୁଣୀ କରକ ବଦନୀ

ପକ୍ୱ ଅରୁଣ ବିମ୍ବାଧରୀ ।

ଛନ,ଛନ,ଛନ ଚାହାଣି ଢାଳଇ

ଚକିତ ଚପଳ ହରିଣୀ ପରି ।
ପୃଥୁଳ ଆୟତ ଶ୍ରୋଣିର ଭାରେ
ମନ୍ଦ ଅଳସ ଛନ୍ଦେ ଚାଲେ ।
ଗଭୀର ତାହାର ନାଭିର କୂପ
କ୍ଷୀଣ କଟି ତାର ଚମତ୍କାର ,
ଈଷତ ନୋଇଁଛି ଅଙ୍ଗଲତା
ସମ୍ଭାଳି ନପାରି ବକ୍ଷଭାର ।
ତରୁଣୀ ମହଲେ ମୋ ସୁନ୍ଦରୀ
ବିଧିର ପ୍ରଥମ ସୃଷ୍ଟି ପରି ।

(ନାରୀକୁ ଆଲିଙ୍ଗନ କରିବା ----୪ର୍ଥକୁ ଡାକି )

- ଆଉ ଏଥର ତୁମେ ଆସ । (୪ର୍ଥ ଆସିଛି ଓ ୨ୟ ପକେଟରୁ ମଦ ବୋତଲ ବାହାର କରି ) ଏ ହେଉଛି ମୋର ପ୍ରିୟ ପାନୀୟ । ସୋମରସ । ସୁବାସିତ । ସୁବାସିତ ସୁରା -- ଇଟାଲିୟନ ସାମ୍ପେନ ।

(୩ୟ ଚିତ୍କାର କରି ଉଠିଛି ଓ ଅନ୍ୟମାନେ ପଳାଇଛନ୍ତି)

୨ୟ - (ହସି ଉଠିଛି) ଭୀରୁଦଳ । ମୋର ସୌଭାଗ୍ୟ ଦେଖି ତୁମମାନଙ୍କର ଈର୍ଷା ନହୋଇ ଭୟ ହେଉଛି । ମୁଁ ସର୍ବଜୟୀ - ତୁମେ ସର୍ବହରା । ଦୁଷ୍ପ୍ରାପ୍ୟକୁ ଅନାବଶ୍ୟକ କହି ତୁମେମାନେ ସବୁବେଳେ ଆତ୍ମ ପ୍ରବଞ୍ଚନା କରୁଛ । ମୋ ରାସ୍ତା ମୁଁ ପାଇଛି । ଆଃ ତୁମମାନଙ୍କ ସାଙ୍ଗରେ ଆଉ ସମୟ ନଷ୍ଟ କରି ଲାଭ ନାହିଁ । ମନେ ରଖ, ଯାବତ୍ ଜୀବେତ୍ ସୁଖଂ ଜୀବେତ୍---ସୁଖଂ ଜୀବେତ୍ । (ସମ୍ମୁଖାଂଶର ଆଲୋକ ଲିଭିଛି ଓ ଅବଶିଷ୍ଟ ୪ଜଣ ମଧ୍ୟାଂଶରେ ପୂର୍ବପରି ଘୁରିବାକୁ ଲାଗିଛନ୍ତି । ସମସ୍ତେ ଘୁରୁଥିବା ବେଳେ ୩ୟ ଚାଲି ଆସିଛି ସମ୍ମୁଖ ଭାଗକୁ । ଆଲୋକ ଜଳିବା ପରେ)

୩ୟ - ମାୟା - - ମାୟା । ସବୁ ମିଥ୍ୟା । ସବୁ ମାୟା । ସେ କର୍ମ, ସେ କାମିନୀ, ସେ କାଞ୍ଚନ ଆଉ ସୁରା ସବୁ ମାୟା । ମାୟା ଏ ଶରୀର, ଏ ପରିବେଶ । ମାୟା ଏ

ବେଷ୍ଟନୀ । ମିଥ୍ୟା ଏ ଘୂର୍ଣ୍ଣନ । ସବୁ ମିଥ୍ୟା, ସବୁ ମରୀଚିକା । ଓଃ ମୁଁ ମୁକ୍ତି ଚାହେଁ । (କଳ୍ପିତ ଦାଢ଼ୀ ଆଉଁସି )ମୁକ୍ତି, ମୁକ୍ତି---ଏ ସମସ୍ତ ବନ୍ଧନରୁ ଚିର ମୁକ୍ତି । ତେବେ ଯାଇ ସେଇ ଶାଶ୍ୱତ - ସୁରଭିତ ଏବଂ ସମୁଜ୍ଜ୍ୱଳ ପଦ୍ମର ସାନିଧ୍ୟ ହୁଏତ ସମ୍ଭବ । (ଶୂନ୍ୟ ଉଦ୍ଦେଶ୍ୟରେ ନମସ୍କାର କରୁ କରୁ) ଓଁ ବ୍ରହ୍ମ ସତ୍ୟଂ -ଜଗନ୍ନମିଥ୍ୟା--ଓଁ ବ୍ରହ୍ମ ସତ୍ୟଂ--ଜଗନ୍ନ ମିଥ୍ୟା--

(ଘୁରୁଥିବା ୩ଜଣ ବିସ୍ମୟରେ ରହିଯାଇ )

୪ର୍ଥ - ତୁ କଣ ଯାଇ ସେଠି ହେଲୁଣି ?

୫ମ - ସେ ଗଲା କେତେବେଳେ ?

୬ଷ୍ଠ - ଚାଲନା କଣ କରୁଛି ଦେଖିବା ।

(ସମସ୍ତେ ଆଗେଇ ଆସିବା )

୪ର୍ଥ - ତୁ ଖସି ଆସିଲୁ କେତେବେଳେ ?

୩ୟ - ବେଳ ? ବେଳ କଣ ମୁଁ ଜାଣେନା ।

୫ମ - ତୁ ଯେ ଆମ ସାଙ୍ଗରେ ଥିଲୁ ?

୩ୟ - ସାଙ୍ଗରେ ? ମୁଁ କେବେ କାହା ସାଙ୍ଗରେ ନଥିଲି ।

୬ଷ୍ଠ - ଚୁପ୍ ଚାପ୍ ଖସି ଆସି ଏଠି କରୁଛ କଣ ?

୩ୟ - ଏଠି ? କେଉଁଠି ? କେଉଁଠୁ ଖସି ଆସିଲି ? କିଏ ତୁମେ ସବୁ ? ମୋ ସାଙ୍ଗରେ କି ସମ୍ପର୍କ ଅଛି ତୁମମାନଙ୍କର ?

୪ର୍ଥ - (ସନ୍ଦେହାତ୍ମକ)ପାଗଳ !

୫ମ - (ପ୍ରଶ୍ନାତ୍ମକ) ପାଗଳ ?

୬ଷ୍ଠ - ହଁ ପାଗଳ । (୩ୟକୁ) ହଁ ତୁ ଟା ସତରେ ପାଗଳ ହୋଇଗଲୁ ।
(ସମସ୍ତେ ହସି ଉଠିଲେ )

୩ୟ - (କାନ ବନ୍ଦ କରିଦେଇ)ମାୟା, ମାୟା, ମିଥ୍ୟା । ତୁମେମାନେ ମୋତେ ଆଉ ଅଟକାଇ ପାରିବନି । କୌଣସି କଥାରେ ନୁହେଁ । କୌଣସି ପ୍ରଲୋଭନରେ ନୁହେଁ ।

ସମସ୍ତେ - ଯଦି ବଳ ପ୍ରୟୋଗ କରୁ ?

୩ୟ - ବଳ ପ୍ରୟୋଗ କରିବ ? କାହା ଉପରେ ? ଏଇ ଶରୀର ଟା ଉପରେ ତ ? କର ସେଥିରେ ମୋର କୌଣସି କ୍ଷତି ହେବନି । ମୁଁ ଅଟକି ଯିବିନି । ଏ ଶରୀରଟା ମଧ ମୋ ପାଇଁ ମାୟା । ବନ୍ଧନ । ତୁମେ ଚେଷ୍ଟା କରି ଏ ଦେହଟାକୁ ଯଦି ଅଟକାଇ ପାରନ୍ତ, ଖୁବ୍ ଭଲ ହୁଅନ୍ତା । ମୁଁ ମୋର ସେଇ ଶେଷ ବନ୍ଧନଟାରୁ ମୁକ୍ତି ପାଇ ପାରୁନି । ଓଃ ମୁକ୍ତି । ମୁକ୍ତି । କି ଆନନ୍ଦ --

୬ଷ୍ଠ - ତୁ କଣ ସେ ପଦ୍ମ ଆଣି ପାରିବୁ ?

୩ୟ - ମୁଁ ଆଣିବି ? ନା, ତାକୁ କେହି କେଉଁଠି ଆଣି ପାରିବେ ନାହିଁ । ମୁଁ ମୋର କୃଚ୍ଛ୍ରସାଧନା ବଳରେ ତାରି ବାସ୍ନାରେ ହେଉ; ରୂପରେ ହେଉ କିମ୍ବା ଆଲୋକରେ ହେଉ ବିଲୀନ ହୋଇଯିବି ।

୫ମ - ଆମେ ଯଦି ତାକୁ ଆଣି ଅଧିକାର କରୁ ?

୩ୟ - ତା' ନିକଟରେ ତୁମ ଆଉ ମୋ' ଭିତରେ କିଛି ତଫାତ୍ ନାହିଁ । କିଏ ପାଇବ ? କିଏ ଅଧିକାର କରିବ ?

୪ର୍ଥ - ମିଛ, ଅସମ୍ଭବ ।

୩ୟ - ସାଗର ଗର୍ଭରେ ପ୍ରବାହିତ ନଦୀ ଜଳ ଯେବେ ବିଲୀନ ହୋଇଯାଏ, ଏକୀଭୂତ ହୋଇଯାଏ, କି ସ୍ୱତନ୍ତତା ରୁହେ ସେମାନଙ୍କର ? କିଏ କାହାକୁ ପାଏ ? କିଏ କାହାକୁ ଅଧିକାର କରେ ?

୬ଷ୍ଠ - କିନ୍ତୁ ବନ୍ଧୁ ! ସେ ନଦୀର ପଟ୍ଟଭୂମି ? ତାର ସେ ସଂକ୍ରମଣ ପଥ ? ଏମାନେ କଣ ସେ ସାଗରରେ ମିଶିଯିବେ ?

୩ୟ - ବହମାନ ଜଳରାଶିର କି ସମ୍ପର୍କ ଅଛି ସେମାନଙ୍କ ସାଙ୍ଗରେ ? ସେ ତ ସେମାନଙ୍କୁ ତ୍ୟାଗ କରିଛି । ମୁକ୍ତ ହୋଇଛି । ଠିକ୍ ମୁଁ ଯେପରି ---

୫ମ - ତା ହେଲେ ତୁ ଆଉ ଫେରିବୁନି ?

୩ୟ - ନା । ମୁଁ ଆଉ ଫେରିବିନି ।

୬ଷ୍ଠ - ଏ' ତାହେଲେ ସ୍ୱାର୍ଥପରତା- ପଳାୟନ ପନ୍ଥା ।

୩ୟ - କିନ୍ତୁ, ଏକମାତ୍ର ପନ୍ଥା । ଏକମାତ୍ର ମାର୍ଗ । ସେ ହିଁ ଏକମାତ୍ର ସଦ୍‌ବସ୍ତୁ । ଏକମାତ୍ର ସତ୍ୟ । ମୁଁ ମୋର ପୂର୍ବପୁରୁଷମାନଙ୍କୁ, ତୁମମାନଙ୍କୁ , ଏପରିକି ନିଜକୁ ମଧ୍ୟ ତ୍ୟାଗ କରୁଛି । (ପାତ୍ରୀରେ ଜଳଦାନର ମୁଦ୍ରା) ମୁଁ ଅନାସକ୍ତ । ମୁଁ ପୁନର୍ଜନ୍ମରହିତ । ମୁଁ ତଲ୍ଲୀନ । ଓଁ ବ୍ରହ୍ମସତ୍ୟଂ --ଜଗନ୍ନମିଥ୍ୟା । (ଚାଲି ଯାଉ ଯାଉ) ଓଁ ବ୍ରହ୍ମ ସତ୍ୟଂ -- ଜଗନ୍ନ ମିଥ୍ୟା

(ସମ୍ମୁଖାଂଶ ଆଲୋକ ଲିଭି ଯାଇଛି ଓ ମଧ୍ୟାଂଶ ଆଲୋକିତ ହେବା ପୂର୍ବରୁ ଅବଶିଷ୍ଟ ୩ଜଣ ଫେରିଆସି ମୁଣ୍ଡ ପୋତି ଠିଆ ହୋଇଛନ୍ତି । ୪ର୍ଥ ପ୍ରଥମେ ସମସ୍ତଙ୍କୁ ଚାହିଁ ଓ ଚିନ୍ତା କରୁ କରୁ ପାଟି କରି ଉଠିଛି)

୪ର୍ଥ - ୟୁରେକା । ମିଳିଗଲା । ମିଳିଯିବ ।

୫ମ - କଣ ମିଳିଗଲା ?

୬ଷ୍ଠ - ମିଳିଯିବ ପୁଣି କଣ ?

୪ର୍ଥ - ଆରେ ବୋକା, ଯାହା ଖୋଜୁଛେ ମିଳିଯିବ । ଆଉ ତା ପାଇଁ ଯେଉଁ ରାସ୍ତା- ସେଇଟା ମିଳିଗଲା ।

୬ଷ୍ଠ - ରାସ୍ତା ? କେଉଁଠି ସେ ରାସ୍ତା ?

୫ମ - ମୁଁ ତ କିଛି ଜାଣି ପାରୁନି ।

୪ର୍ଥ - ଧର୍ମ, ଧର୍ମ ହିଁ ଏକମାତ୍ର ମାର୍ଗ । ଆସ ମୋ ସାଙ୍ଗରେ ( ସେ ଆଗେଇ ଯାଇଛି ସମ୍ମୁଖକୁ । ଏ ଦୁହେଁ ଅନୁଗମନ କରିଛନ୍ତି । ଆଲୋକ ଜଳିଉଠିଛି)

୪ର୍ଥ - (ପ୍ରଣାମ ମୁଦ୍ରାରେ) ଓଁ ଗୁରୁ ବ୍ରହ୍ମା, ଗୁରୁର୍ବିଷ୍ଣୁ, ଗୁରୁଦେବ ମହେଶ୍ୱର, ଗୁରୁ ସାକ୍ଷାତ ପରଂବ୍ରହ୍ମ - ତସ୍ମୈ ଶ୍ରୀଗୁରବେ ନମଃ ।

୫ମ - କିରେ ! ଏ ତ କଣ ଭୋଗ ବଣ୍ଟା ଚାଲିଲା ।

୬ଷ୍ଠ - ଭୋଗ ବଣ୍ଟା ?

୫ମ - ଆଉ କଣ ? ଦେଖୁନୁ- ଗୁରୁବ୍ରହ୍ମା, ବିଷ୍ଣୁ, ମହେଶ୍ୱର ---- । ତେତିଶ କୋଟି ଦେବତା । ଯାର ଭକ୍ତି ଆଉ ହୃଦୟ ବୋଲି ଏମିତି କେତେ ହେବ; ଆଉ କେତେ କେତେ ଭାଗ ପଡିବ ଏ ଦେବତାମଣ୍ଡଳୀର ? ଏଠି ତ

ଦେବତାମାନେ ପ୍ରସାଦ ବାଣ୍ଟିଣ ଖାଇବେ ---

୪ର୍ଥ - ମୂର୍ଖ ! ହୃଦୟକୁ କଣ ଜାମା ପ୍ୟାଣ୍ଟ ନା କାଚ ବୋତଲ ବୋଲି ଭାବିଲ ?

୫ମ - ଯାହା ହେଲେ ବି ବନ୍ଧୁ ! ଘର ପୋଡିଗଲା ଭଳି ଏ ସମସ୍ତଙ୍କୁ ଡକା ପକାଇଛ କାହିଁକି ?

୪ର୍ଥ - (କ୍ଷଣେ ଚିନ୍ତା କରି) ଠିକ୍ ଅଛି । ଏକେଶ୍ୱରବାଦ । ଏକ ଈଶ୍ୱର ଆଲ୍ଲା
(ନମାଜ ମୁଦ୍ରାରେ) ଆଲ୍ଲା ହୋ ଆକବର ---
ଆଲ୍ଲା ହୋ ଆକବର, ଆସଦୋଂ ଆଲହା' ଇଲ୍ଲାହା ---
ଇଲ୍ଲହା ଆସଦୋଂ ଆଲହା , ଇଲ୍ଲାହା -- ଇଲ୍ଲାହା ---

୬ଷ୍ଠ - ତୁମେ କଣ ସିଆ-- ?

୫ମ - ସୁନ୍ନୀ ବି ହୋଇପାରନ୍ତି ।

୪ର୍ଥ - (ବିଚଳିତ ହୋଇ ଓ କ୍ଷଣକ ଚିନ୍ତା ପରେ) ନା-- ନା-- ମୁଁ ଖ୍ରୀଷ୍ଟିୟାନ--
- ପ୍ରେମମୟ ଯୀଶୁ ମୋର ତ୍ରାଣକର୍ତ୍ତା ---।
(ଛାତି ଓ ବାହୁରେ କ୍ରୁଶ ସଂକେତ କରି)
Oh, God, Thy hath made one after
Thy image, Thy love---

୬ଷ୍ଠ - Love ? ପ୍ରେମମୟ ଈଶ୍ୱର ତୁମର ପଥ ପ୍ରଦର୍ଶକ ?

୫ମ - କଣ ତୁମେ ? କ୍ୟାଥୋଲିକ୍ ?

୬ଷ୍ଠ - ବ୍ୟାପ୍ଟିଷ୍ଟ ନହେବ କାହିଁ କି ।

୪ର୍ଥ - ତୁମେ ସବୁ ବିଧର୍ମୀ । ତୁମେ ସବୁ ଭ୍ରଷ୍ଟାଚାରୀ । ନାସ୍ତିକ । ମୁଁ ମୋର ମାର୍ଗ ପାଇଛି ।

୫ମ - ମାର୍ଗ ? ବହୁ ମାର୍ଗ ।

୬ଷ୍ଠ - ବହୁ ଧର୍ମ ।
(ଦୁହେଁ ହସି ଉଠିଲେ । ସେମାନଙ୍କ ହସକୁ ଉପେକ୍ଷା କରି )

୪ର୍ଥ - (ପ୍ରଣାମ ମୁଦ୍ରାରେ ) ଓଁ ବ୍ରହ୍ମଣେ ନମଃ, ଓଁ ବିଷ୍ଣବେ ନମଃ, ଓଁ ଶିବାୟ ନମଃ

୫ମ - ତୁମେ କଣ ଶୈବ ?

୬ଷ୍ଠ - ଶାକ୍ତ ? ବୈଷ୍ଣବ ?

୪ର୍ଥ - (ପ୍ରଶାନ୍ତ ମୁଖମଣ୍ଡଳରେ ହସ୍ତ ଉତ୍ତୋଳନ କରି ଆଶୀର୍ବାଦ କରିଛି)

୬ଷ୍ଠ - ଓଃ ବୁଝିଲି, ତୁମେ ଜୈନ ।

୫ମ - ନା, ନା, ଏ ହେଉଛି ବୁଦ୍ଧଙ୍କ ମୁଦ୍ରା ।

୪ର୍ଥ - (ସେମିତି ଭାବରେ ଚାଲିବାକୁ ଆରମ୍ଭ କରିଛି) ଓଁ ବୁଦ୍ଧଂ ଶରଣଂ ଗଚ୍ଛାମି। ଓଁ ସଘଂ ଶରଣଂ ଗଚ୍ଛାମି । ଓଁ ଧର୍ମଂ ଶରଣଂ ଗଚ୍ଛାମି । (ପ୍ରସ୍ଥାନ) (ଦୁହେଁ ତା ଯିବାକୁ ଅନାଇ ହସିଛନ୍ତି । )

୫ମ - ସମ୍ପୂର୍ଣ୍ଣ ପ୍ରତାରିତ । ବିଚାରା ।

(ଉଭୟେ କାନ୍ଧ ଉପରେ ହାତ ରଖି ଫେରି ଆସିଛନ୍ତି ମଧ୍ୟାଂଶକୁ ।

ସମ୍ମୁଖ ଆଲୋକ ଲିଭିଛି ଓ ଅନ୍ଧକାରରେ ଶୁଭିଛି ୬ଷ୍ଠର ଆର୍ତ୍ତ ଚିତ୍କାର । ମଧ୍ୟାଂଶ ଆଲୋକ ହେବାରେ ଦେଖା ଦେଇଛି ୬ଷ୍ଠ ଯନ୍ତ୍ରଣାରେ ଛଟପଟ ହେଉଛି ଓ ପଞ୍ଚମ ତାକୁ ଧରି ରଖିଛି )

୬ଷ୍ଠ - ଓଃ, ମୋତେ ଧର । ମୋତେ ବଞ୍ଚାଅ । ମୁଁ ପାରୁନି । ମୋତେ --

୫ମ - କଣ ହେଲା ତୋର ? କଣ ଦରକାର ।

୬ଷ୍ଠ - ମୁଁ ଦୁର୍ବଳ । ମୋତେ ଟିକେ ସାହାଯ୍ୟ କର । ମୁଁ ରୁଗ୍ଣ । ଓଃ କି ଯନ୍ତ୍ରଣା ? ମୁଁ ମୁମୂର୍ଷୁ । ମୋତେ ବଞ୍ଚାଅ ।

୫ମ - (ବ୍ୟସ୍ତ ଭାବେ ୬ଷ୍ଠର ଛାତି ଓ ବେକ ଆଉଁସି) କଣ ହୋଇଛି ? ଛାତିରେ ଯନ୍ତ୍ରଣା ? ମୁଣ୍ଡରେ ବ୍ୟଥା ? ଔଷଧ ଦରକାର ?

୬ଷ୍ଠ - ମୁଁ ନିଃସ୍ୱ । ମୁଁ ସମ୍ବଳହୀନ । ମୁଁ ସଙ୍ଗହୀନ ।

୫ମ - ଛି; ଛିଃ ସେମିତି କୁହନ୍ତି ? ମୁଁ ଯେ ଅଛି । ନେ,ଏଇ ଔଷଧ ଟିକେ ପିଇ ନେ..। ଏ ଗରମ ଦୁଧ ପିଇ ନେ । (ଔଷଧ ଓ ଦୁଧ ଖୋଇବାର ଓ ସେବା କରିବାର ଅଭିନୟ କରି ) ନେ, ଏ ଗରମ ଦୁଧ ପିଇ ନେ, ଖୁବ୍ ଭଲ

ଲାଗିବ । (୬ଷ୍ଠ କ୍ରମଶଃ ସୁସ୍ଥ ହୋଇଉଠିଛି)

୬ଷ୍ଠ - ତୁମର ଏ ଋଣ କେବେ ଶୁଝି ପାରିବିନି । ଈଶ୍ୱର ତୁମର ମଙ୍ଗଳ କରିବେ ।

୫ମ - ତୋତେ ଭଲ ଲାଗୁଚି । ? ତୋର ଆଉ କଷ୍ଟ ହେଉନି ?

୬ଷ୍ଠ - ନା, ସତରେ ତୁମେ ସହାୟ ହୋଇନଥିଲେ --- ।

୫ମ - ବାଃ, ବେଶ୍ ତ । ଓଃ କି ଆନନ୍ଦ (ହଠାତ୍ ଚିନ୍ତିତ ହୋଇପଡ଼ିବା ଓ ଏକ ମୀମାଂସାରେ ପହଞ୍ଚିବା ) ଠିକ୍ ଏଇ ଶାନ୍ତି । ତୋରି ପରି ଏମିତି ଅନେକ ଅସହାୟ ଥିବେ ? ତେବେ ?--- ହଁ -- ହଁ ମୁଁ ସେମାନଙ୍କର ସହାୟତା କରିବି । ସେବା କରିବି । (ଆଗକୁ ଆସି ଭାବାବେଶ ହୋଇଉଠି) ସେବା ସହାୟତା-- ସେଇହିଁ ପଥ । ଏଇ ତ ସେ' କର୍ତ୍ତବ୍ୟ । ଏହା ହିଁ ପନ୍ଥା । ଏହା ହିଁ ମାର୍ଗ । ଏଠି ଆଉ ଅପେକ୍ଷା କରି ଲାଭ କଣ ? ନା' ମୁ ଯିବି । ମୋର ସାମାନ୍ୟତମ ସହାୟତା , ନ୍ୟୁନତମ ସାହଚର୍ଯ୍ୟ , ଓଃ କେତେ ଯେ ଆବଶ୍ୟକ ସେଇମାନଙ୍କ ପାଇଁ -- ଯେଉଁମାନେ ରୁଗ୍ଣ, ଯେଉଁମାନେ ନିଃସ୍ୱ - - - ନିଃସହାୟ ।

୬ଷ୍ଠ - (ସମ୍ମୁଖକୁ ଆସି) ତୁମେ କଣ ତାହେଲେ ଆସି --- ?

୫ମ - ହଁ --ହଁ । ଏହା ହିଁ ମୋର ମାର୍ଗ । ସେବା । ମୁଁ ଚାଲିଲି ବନ୍ଧୁ । ମୁଁ ଚାଲିଲି । ପରୋପକାରାୟ ସର୍ଗାୟ । (ଚାଲିଯାଉ ଯାଉ ) ପରୋପକାରାୟ ସର୍ଗାୟ, ପରୋପକାରାୟ ସର୍ଗାୟ । (ପ୍ରସ୍ଥାନ) (ଅବଶିଷ୍ଟ ୬ଷ୍ଠ ଚରିତ୍ର ଭାବାବେଶରେ ତାହା ସହ କିଛି ଦୂର ଆଗେଇ ଯାଇଛି ଓ ରହି ଯାଇଛି । ବ୍ୟସ୍ତ ଭାବରେ ପଦଚାରଣା କରିଛି ସମ୍ମୁଖାଂଶରେ ଓ ପୂର୍ବ ପାଞ୍ଚଜଣଙ୍କ ମାର୍ଗକୁ ବିଶ୍ଳେଷଣ କରିବାକୁ ଆରମ୍ଭ କରିଛି )

୬ଷ୍ଠ - ନା ---। କର୍ତ୍ତବ୍ୟ--- ? କର୍ମ ହିଁ ଈଶ୍ୱର ? ନା' ନା' । କାମିନୀ କାଞ୍ଚନ ?ଯାବତ୍ ଜୀବେତ ସୁଖଂ ଜୀବେତ୍ ? ନା । ତପସ୍ୟା ? ମୁକ୍ତି ? ବ୍ରହ୍ମ ସତ୍ୟ ଜଗନ୍ନ ମିଥ୍ୟା ? ନା, ଏ ତ ପଳାୟନ ପନ୍ଥା , ସ୍ୱାର୍ଥପରତା । ଆଉ ଧର୍ମ -- ? ଧର୍ମଂ ଶରଣଂ ଗଚ୍ଛାମି । ନା' ନା, ବିଚରା - ପ୍ରତାରିତ --

ପ୍ରତାରକ । (ହସିଉଠିଛି)

ସେବା ? ପରୋପକାରାୟ ସର୍ଗାୟ । (ମୁଣ୍ଡ ହଲାଇ) ଆତ୍ମାଭିମାନର ଭିନ୍ନ ରୂପ । (ମଧାଂଶକୁ ଫେରିଯାଇଛି) - ତେବେ ? ତେବେ କାହିଁ ସେ ମାର୍ଗ ? କାହିଁ, କାହିଁ ସେ ବାସ୍ନା ? କାହିଁ ସେ ଆଲୋକ ?କେମିତି ତାର ରୂପ ? (ସମ୍ମୁଖାଂଶକୁ ଆସି ଚିନ୍ତିତ ହୋଇଉଠିଛି ଓ ହଠାତ୍ ପାଗଳ ପରି ହସିଉଠି) L.S.D- ଚରସ --ଗଞ୍ଜାଇ--ହିପ୍ପିଜିମ-ହୁର୍‌ରେ । ହିପ୍ପିଜିମ୍ - ହିପ୍,ହିପ୍ ହୁର୍‌ରେ ।

(ନିଶ୍ଚଳ ହୋଇଯାଇଛି ଓ ସମସ୍ତ ଆଲୋକ ନିର୍ବାପିତ ହୋଇଛି)

***

## ଆଖ୍ୟାୟିକା

(ପ୍ରତିନିଧିମୂଳକ ଚରିତ୍ରମାନଙ୍କର ବିଭିନ୍ନ ମାର୍ଗାନୁସରଣ ପରେ ସେମାନଙ୍କର ଏକ ସାଂସାରିକ ସ୍ଥିତି ଓ ପରିଣତିର ସୂଚନା ମିଳେ ଏ ଆଖ୍ୟାୟିକା ମାଧମରେ । ପରିବେଶର ସତନ୍ତତା ଦୃଷ୍ଟିରୁ ସହଜତମ କୌଶଳରେ ମଞ୍ଚସଜ୍ଜା ଓ ଆଲୋକ ସମ୍ପାତ ପରିବର୍ତ୍ତନ କରାଯିବ । ୩ୟ ଚରିତ୍ର ସନ୍ନ୍ୟାସୀକୁ ବାଦ୍ ଦେଇ ଅନ୍ୟପାଞ୍ଚଟି ଚରିତ୍ର ଏ ଆଖ୍ୟାୟିକାରେ ନିମ୍ନ ଅନୁସାରେ ନାମିତ ହେବେ ।)

୧ମ ଚରିତ୍ର - କର୍ମ ପାଇଁ ପାର୍ଥ ଦାସ (ଜମିଦାର )

୨ୟ ଚରିତ୍ର - ଭୋଗ ପାଇଁ ଅଶୋକ(ପାର୍ଥଦାସଙ୍କ ବଡପୁଅ)

୪ର୍ଥ ଚରିତ୍ର - ଧର୍ମ ପାଇଁ ଫାଦର ଫ୍ରାନସିସ୍ (ମିସନର ଫାଦର)

୫ମ ଚରିତ୍ର - ସେବା ପାଇଁ ଦୀନବନ୍ଧୁ(ଅନାଥ ଆଶ୍ରମର ପରିଚାଳକ)

୬ଷ୍ଠ ଚରିତ୍ର - ହିପ୍ପି ପାଇଁ ଅବୋଧ(ପାର୍ଥ ଦାସଙ୍କ ସାନପୁଅ)

( ଏ ଅଂଶ ସାଂକେତିକ କିମ୍ବା ସାମାଜିକ ଭାବରେ ପରିଧାନ ଓ ଉପକରଣ ସହ ମଞ୍ଚସ୍ଥ କରାଯାଇପାରେ । )

(ମଞ୍ଚ ଆଲୋକିତ ହେବା ପରେ ଦେଖାଗଲା ପାର୍ଥ ଦାସ ଗୋଟିଏ ଟେବୁଲ ଉପରେ ଭରା ଦେଇ ଚା' ପିଉଛନ୍ତି । ପ୍ରବେଶ କରିଛି ଅବୋଧ - ହିପ୍ପି । ହାତରେ ତିନି ଖଣ୍ଡ ଚିଠି ଓ ସେଦିନର ଖବର କାଗଜ)

ଅବୋଧ - ଡ୍ୟାଡ୍, ଆଜ୍‌କା ତାଜା ଖବର । (ଚିଠି ଗଣି) ତିନି ଖଣ୍ଡ ପତ୍ର ଓ ସମ୍ବାଦ ପତ୍ର ।

ପାର୍ଥ - ଆଚ୍ଛା । ସେଗୁଡ଼ାକ ଯେ ତାଜା ଖବର ତୁ ଜାଣିଲୁ କିପରି ?

ଅବୋଧ - ନହୋଇପାରେ । ଆଜ୍‌କା ତାଜା ଖବର ଗୋଟାଏ Introducing proverb ତାର ଅର୍ଥରୁ ଭାବ କିମ୍ବା ଭାବରୁ ଅର୍ଥ କଲେ ଠିକ୍ ବୁଝି ହେବନି ।

ପାର୍ଥ - ତୁ ନିଜେ ବୁଝୁଛୁ ତ ?

ଅବୋଧ - ମୁଁ କିନ୍ତୁ ଡାଡ୍ , ଆଉ ଗୋଟାଏ କଥା ଭାବୁଥିଲି ।

ପାର୍ଥ - କଣ ?

ଅବୋଧ - ଏମିତି ଗୋଟାଏ ତୁଳନାତ୍ମକ ବର୍ଣ୍ଣନା କିମ୍ବା ବର୍ଣ୍ଣନାତ୍ମକ ତୁଳନା । ଚିଠିସବୁ ଦୂର ଦୂରାନ୍ତରୁ ଆସି ଏ ସହରର ପୋଷ୍ଟ ଅଫିସରେ ଏକତ୍ରିତ ହୁଅନ୍ତି । ପୋଷ୍ଟ ପିଅନ ତାକୁ ବହନ କରି ଆଣେ ଆମ ଏଇ ଘର ଉଦ୍ଦେଶ୍ୟରେ । ଠିକ୍ ସେମିତି, ବହୁ ଉତ୍ସର ଦୂରଦୂରାନ୍ତରୁ ଖବରଗୁଡ଼ାକ ଆସି ପ୍ରେସରେ ଏକତ୍ରିତ ହୁଅନ୍ତି ଏବଂ କାଗଜ ଆଡ଼କୁ । ସର୍ବୋପରି ଏଇ ମୁଖ୍ୟ ଦୁଇଟି ଧାରାକୁ ଏକତ୍ରିତ କରି ମୁଁ ଆଣିଲି ଆପଣଙ୍କ ପାଖକୁ । ସମସ୍ତ ଉତ୍ସର ଏ ସବିଶେଷ ପ୍ରତିନିଧି ପାଇଁ ସାମାନ୍ୟତମ କମିସନ ----- ।

ପାର୍ଥ - ଏ ତ କେବଳ ବର୍ଣ୍ଣନା ହେଲା, ତୁଳନା --- ?

ଅବୋଧ - ତୁଳନା ତ ଅନେକ ଡାଡ୍ , ଅନେକ ହେବ । ଏଇ ଧରନ୍ତୁ ବିଭିନ୍ନ ଝରଣା ଆଉ ଉପନଦୀର ମିଶ୍ରଣରେ ନଦୀ , ସେଥିରୁ Water house ଓ ପରେ ପାଇପ୍ ଜରିଆରେ ଆମ ଘରକୁ ଜଳ ଯୋଗାଣ ବ୍ୟବସ୍ଥା । ମୁଁ ଏଠି ଧରିନିଅନ୍ତୁ Tap । ଆଉରି ମଧ , ବିଭିନ୍ନ ସ୍ଥାନରୁ ଆନୀତ ପନିପରିବା ଓ ଡାଲିଚାଉଳ ପ୍ରଭୃତିଙ୍କର ଏକତ୍ରିକରଣ ହୁଏ ଆମ ରନ୍ଧନଶାଳାରେ । ସେଠୁ After necessary arrangments ଟ୍ରେ ଜରିଆରେ ଖାଦ୍ୟ ପଦାର୍ଥ ଆସିଲା ଡାଇନିଂ ଟେବୁଲକୁ । Atlast, ମୋତେ ଚାମଚ ଧରି ନେଇ ପାରନ୍ତି।

ପାର୍ଥ - ଆଚ୍ଛା Tap ଆଉ ଚାମଚର ପ୍ରତିନିଧି, ତୁମକୁ ତୁମର କମିସନ ମିଳିବ । ଚିଠି ସବୁ କେଉଁଠୁ ଆସିଛି ଦେଖିଲୁ ।

ଅବୋଧ -(ପ୍ରଥମ ଚିଠି ଉପରୁ ପଢ଼ି )ଏଇଟା ଗୋଟେ Civil supply officer ଙ୍କର ଚିଠି ।

ପାର୍ଥ - ଖୋଲି ଦେଖ ତ । ପୁଣି କଣ ଆସିଗଲା ।

ଅବୋଧ - (ଚିଠି ଖୋଲି ପଢ଼ି)ଏଇଟା ସପ୍ଲାଇ ଅଫିସର ଲେଖିଛନ୍ତି ସୁପରଭାଇଜର ପାଖକୁ ଆଉ Copy to you for necessary action .

ପାର୍ଥ - କଣ ଲେଖାଅଛି ?(ଚା କପ୍ ରଖିଦେବା)

ଅବୋଧ - Arrange to transport the levy stock of paddy from Parth Das to head quarters at an early date.

ପାର୍ଥ - ଏଥିରେ ଆମର କୌଣସି Action ବା Reaction ନାହିଁ । ସୁରଭାଇଜର ତା କାମ କରିବ ।

ଅବୋଧ - (ଆଉ ଖଣ୍ଡେ ଚିଠି ପଢ଼ି)ଏଇଟା ଆମ ସିଷ୍ଟର ଟିଙ୍କୁର ଡାଡ୍ ।

ପାର୍ଥ - କଣ ଲେଖିଛି ?

ଅବୋଧ - (ଚିଠି ଖୋଲି ପଢ଼ିବା) ଆପଣଙ୍କ ପାଖକୁ ଲେଖିଛି ।

ଡାଡି ।

ପ୍ରଣାମ ନେବେ । ଆପଣ କୁହନ୍ତି କୌଣସି ପରିସ୍ଥିତିକୁ ନଡରି ସଦାବେଳେ ସତ କଥା କହିବାକୁ । ଅବଶ୍ୟ ସତ୍ୟକୁ ଅପ୍ରିୟ ଭାବରେ ପ୍ରତିପାଦନ କରିବା ନୀତି ବିରୁଦ୍ଧ । କିନ୍ତୁ ଡାଡି , ମୁଁ ଯେ ଦିନେ ବିବାହ କରିବି ଏ କଥା ହୁଏତ ଆପଣ ସେତେବେଳେ ଚିନ୍ତା କରିନଥିଲେ । ଆପଣଙ୍କ ଭାଷାରେ ସାମାଜିକ ଆଉ ଶାସ୍ତ୍ରୀୟ ବିବାହର ଯେଉଁ ବିଶେଷ ମୂଲ୍ୟବୋଧ ତାର ସ୍ୱାଦ ମୋତେ ଅତିଷ୍ଠତାର କେଉଁ ସୀମାକୁ ଟାଣି ନେବ ଜାଣେନି । ଏତେ ଠାକୁରଙ୍କୁ ସାକ୍ଷୀ ରଖି ମୁଁ ଏ ଯେଉଁ ପରିବେଶକୁ ଆସିଲି, ଏଠି ସତ୍ୟକୁ ପ୍ରିୟ ଭାବରେ ପରିବେଷଣ କରିବା ମୋ ପକ୍ଷରେ ଅସମ୍ଭବ । ମୁଁ ଅକ୍ଷମ । ତେଣୁ ମୁଁ ଭାବୁଛି -ମୁଁ ଯଦି ଏ ପାରିବାରିକ ପରିବେଶରୁ ମୁକ୍ତି ପାଇ ପାରନ୍ତି, ହୁଏତ ଅବସ୍ଥା କିଛିଟା ସୁଧୁରି ଯାଇ ପାରନ୍ତା । ଏଇ ଦୃଷ୍ଟିରୁ ଆପଣ ନିଜେ କିମ୍ବା ଅଶୋକ ଭାଇଙ୍କ ଜରିଆରେ , ଆପଣ ଝିଅ ଦେଇ ପାଇଥିବା ପୁଅ ପାଇଁ କୌଣସି ଏକ ସତନ୍ତ୍ର ବ୍ୟବସ୍ଥା କରିପାରିଲେ , ମୁଁ ଖୁସି ହେବି । ଅବୋଧ ଯଦି ଚାହେଁ, ମୋ ପାଖକୁ ଆସିବାକୁ କହିବେ । ଇତି ।

ସ୍ନେହର ଟିଙ୍କୁ ।

ମୁଁ ବିଲକୁଲ ଚାହୁଁନି । ତେଣୁ ଆପଣ ମୋତେ ଯିବାକୁ କହିବେନି ।

ପାର୍ଥ - (ବ୍ୟସ୍ତ ହୋଇଉଠିଲେ ) ମୁଁ ବୁଝିପାରୁନି ଦୋଷ କାହାର ? ତୁ ତ ଯିବୁନି। ଠିକ୍ ଅଛି । ତୁ ତା ଶ୍ୱଶୁର ପାଖକୁ ଗୋଟେ ଟ୍ରଙ୍କକଲ ବୁକ୍ କଲୁ । ଅର୍ଜେଣ୍ଟ ଏବଂ ପି.ପି. ବୁକ୍ କରିବୁ ।

ଅବୋଧ - ଆଉ ଏ ଚିଠି ?

ପାର୍ଥ - ପ୍ରଥମେ କଲ୍‌ଟା ବୁକ୍ କରି ଆ । ଦେ ସେ ଗୁଡ଼ାକ ମୋତେ ।

ଅବୋଧ - (ଚିଠି ଓ କାଗଜ ଦେଇ ଫୋନ୍ ପାଖକୁ ଯାଉ ଯାଉ ) Urgent work, special commission ( ଅବୋଧ ଫୋନ୍ ପାଖକୁ ଯାଇ ଡାଏଲ କରୁଥିବା ବେଳେ)

ପାର୍ଥ - (ବ୍ୟସ୍ତ ଭାବରେ ପଦ ଚାରଣା କରୁ କରୁ) ସତ୍ୟକୁ ଅପ୍ରିୟ ଭାବରେ ପୁଣି ପ୍ରକାଶ କରାଯିବ କେମିତି ? ତା ବର ପାଇଁ ଗୋଟିଏ ସ୍ୱତନ୍ତ୍ର ବ୍ୟବସ୍ଥା କରିଦେଲେ କଣ---(ଏତିକି ବେଳେ ଅଶୋକ ପଶି ଆସିଛି । ଅବୋଧ ଫୋନ୍ ଡାଏଲ କରୁଥିବାର ଦେଖି କ୍ରଡଲ ଉପରେ ଆଙ୍ଗୁଠି ରଖି ଦେଇ)

ଅଶୋକ - ଅବୋଧ, Just a minute .

ଅବୋଧ - ଡାଡିଙ୍କ emergency.

ଅଶୋକ - (ପାର୍ଥଙ୍କୁ ଚାହିଁ) Excuse me Daddy ଗୋଟାଏ ମିନିଟିରୁ ଅଧିକା ନେବିନି । (ଅବୋଧ ହାତରୁ ରିସିଭର ନେଇଯାଇ ନିଜେ ଡାଏଲକରି ଶୁଣିବା ପରେ) Oh Lily, here is Ashok (ପାର୍ଥଙ୍କ ଆଡ଼େ ଚାହିଁ ଓ ଫୋନ୍‌ରେ ହାତ ରଖି ଦେଇ) please don't mind (ଫୋନ୍ ରେ) ତୁ ଯେ ଫେରି ଆସିଲୁ I do congratulate । (ଫୋନରେ ଚୁମା ଦେବା)--- ଓଃ Sure ମୁଁ ପହଞ୍ଚି ସାରିଲିଣି ବୋଲି ଧରି ନେଇ ପାରୁ । ତୁ ଗେଟ୍ ପାଖକୁ ଆସି ଦେଖିବୁ ମୁଁ ଅପେକ୍ଷା କରୁଥିବି---ହଁ-ହଁ ଠିକ୍ ଅଛି ,ବେଟ୍ (ଫୋନ୍ ରଖିଦେଇ ଅବୋଧର କାନ୍ଧ ଥାପୁଡ଼େଇ ଦେଇ ) Thank you. କର୍ତ୍ତବ୍ୟ କର (ଚାଲିଯିବା ବେଳେ)

ପାର୍ଥ - ମୋ ସହ ଗୋଟାଏ ମିନିଟ ?

ଅଶୋକ - Sorry Daddy ସେଇ lunch ବେଳେ କଥା ହେବା (ଦ୍ରୁତ ପ୍ରସ୍ଥାନ) (ପାର୍ଥ ଅଶୋକର ଯିବା ବାଟକୁ ଅନାଇ ରହିଥିବା ଓ ଚିନ୍ତା କରୁଥିବା ବେଳେ ଅବୋଧ ଫୋନ୍ ବୁକ୍ କରୁଥାଏ । ପାର୍ଥ ବ୍ୟସ୍ତ ହୋଇ ଉଠି )

ପାର୍ଥ - କେଉଁଠି ଭୁଲ ରହିଲା ମୋର ? ମୋ କର୍ତ୍ତବ୍ୟରେ ମୁଁ କେବେ ଅବହେଳା କରିନି (ଅବୋଧ ଫେରିଆସିଛି)

ଅବୋଧ - ଡ୍ୟାଡ, ଅଶୋକ ଭାଇଙ୍କର ଏ ଯେଉଁ ସ୍ମାର୍ଟନେସ୍ , ସତ କହିବାକୁ ଗଲେ ମୋ ହାତରୁ ସେ ଫୋନ୍‌ଟାକୁ ଆଉ ଆପଣଙ୍କ ହାତରୁ ଗୋଟାଏ ମିନିଟ ଯେପରି ଭାବରେ ଛଡାଇ ନେଲେ , ମାନେ ଯେଉଁ କୌଶଳରେ ନେଇ ଯାଇ ପାରିଲେ , ସେଇ କୌଶଳ ହିଁ ତାଙ୍କୁ ଏତେ ଉପରକୁ ଆଉ ଏତେ ସ୍ପିଡରେ ନେଇ ଯାଇପାରୁଛି । କେହି ନହେଲେ ଅନ୍ତତଃ ଆମ ଟିଙ୍କୁର ଭାଇଙ୍କଠୁ ଏଇଟା ଶିଖିନେବା ଉଚିତ ଥିଲା ।

ପାର୍ଥ - ଉଚ୍ଚତା ଆଉ ବେଗ ଗୋଟାଏ ଗୋଟାଏ ବିପଦର କାରଣ । ଆଉ ଦୁଇଟା ଯଦି ମିଶିଯାନ୍ତି ----

ଅବୋଧ - Two minuses make a plus Dad. ସେ ଚିଠିଟା ମାମିର । ଚିଠି ଆପଣ ପଢ଼ିନେବେ । (ପ୍ରସ୍ଥାନ)

ପାର୍ଥ - (କ୍ଷଣେ ଅନାଇ ରହିବା ପରେ ଚିଠି ଖୋଲିଛନ୍ତି ଓ ପଢ଼ିଛନ୍ତି ---- ଅନ୍ତରାଳରୁ ନାରୀ କଣ୍ଠରେ)

ପ୍ରଥମେ ଅଶୁଭ ଖବରଟା ଦେଇ ଶୁଭ ଖବରଟା ପଛକୁ ରଖୁଛି । ଆଜି ଆମ ସମ୍ମେଳନର ଏ ୫ମ ଦିନରେ ପ୍ରୋଗ୍ରାମ ମୁଖ୍ୟତଃ ଆଲୋଚନାମୂଳକ ହୋଇଥିବାରୁ ମୁଁ ଟିକେ କଫିହାଉସକୁ ଉଠିଆସି ସେଠି ଦେଖିଲି ବିପ୍ଳବ ବସିଛି । ତା ପାଖରେ ବସିଛି ବୈଶାଖୀ । ବେଶ୍ ଖୁସି ମନରେ । ତୁମେ ବିପ୍ଳବ ପାଖରେ ଆମ ଟିଙ୍କୁ ବସିଥିବାର ଦେଖିଥିବ । ବୈଶାଖୀକୁ ତୁମେ ଦେଖିନ । ସେ ହେଉଛି ଆମ ଏ ସମ୍ମେଳନର

ଆୟୋଜକ ସଂସ୍ଥା Women-de- Advancement ର chief patron Mr. Sharmaଙ୍କ ସବା ସାନ ଝିଅ । High societyର ଝିଅ ଭାବରେ ତାର ସବୁ ପ୍ରକାର Vanity ଥାଇ ମଧ ନିଜସ୍ୱ ରୂପ ନାହିଁ । ବିପ୍ଳବ ପରି ଏତେ ସୁନ୍ଦର ଚେହେରାର ପିଲାଟା ପାଖରେ ତାକୁ ଦେଖି ମୋତେ ଭାରି ଦୁଃଖ ଲାଗିଲା । ସତରେ ଆମ ଟିଙ୍କୁଟା ଯେପରି ବିପ୍ଳବ ପାଇଁ କେବଳ ଜନ୍ମ ହୋଇଥିଲା । ବିପ୍ଳବ ପ୍ରତି ମୋର ଯଥେଷ୍ଟ ଦୟା ହେଉଥିଲେ ମଧ ମୁଁ କଫି ନପିଇ ଚାଲି ଆସିଲି । (ପାର୍ଥ କ୍ଷଣେ ଚିନ୍ତା କରି ମୃଦୁ ହସ ପରେ) Conferenceର ଆଜିକା ପ୍ରୋଗ୍ରାମ ଅନୁସାରେ ଆମର ଗୋଟାଏ Consulting wing ଗଠନ କରାଗଲା । ବୈଶାଖୀର ମମି Mrs. Sharmaଙ୍କ ପ୍ରସ୍ତାବ ଉପରେ ମୋତେ ନିର୍ଦ୍ୱନ୍ଦ୍ୱରେ ସେ wingର ଆବାହିକା ରୂପେ ନିର୍ବାଚନ କରାଯାଇଛି । ଏତେ ସହଜରେ ଏ ସମ୍ମାନ ପାଇଁ ମୋର ମନେ ହୁଏ , ଏଥର ତୁମେ ମୋତେ ଖୁସି ମନରେ ଏଠିକି ପଠାଇଥିଲ । ହଁ - ଏ ଗୌରବ ଯେପରି ମହାନ , ଦାୟିତ୍ୱ ମଧ ସେପରି ମହାନ । ମୋଟାମୋଟି ମୋତେ ଅନେକ ଯୋଗ୍ୟ ଭଦ୍ରମହିଳାଙ୍କୁ ନେଇ ଏ Consulting wing ପରିଚାଳନା କରିବାକୁ ପଡ଼ିବ । ଆମମାନଙ୍କୁ ସମାଜର ଗଣ୍ୟମାନ୍ୟ ବ୍ୟକ୍ତିମାନଙ୍କ ନିକଟରେ ପହଞ୍ଚି ନାରୀ ଯେ ପୁରୁଷ ସହ ସବୁ କ୍ଷେତ୍ରରେ ସମ ସମ୍ମାନର ଅଧିକାରିଣୀ , ଖାଲି କହିବୁ ନୁହେଁ; ବୁଝେଇବୁ । ମନେଇବୁ । ସେମାନଙ୍କର ମାନସିକ ପରିବର୍ତ୍ତନ ନହେବା ପର୍ଯ୍ୟନ୍ତ ଆମମାନଙ୍କର ଏ ପ୍ରଚେଷ୍ଟା ଜାରି ରହିବ ।

(ପାର୍ଥ ଦୀର୍ଘଶ୍ୱାସ ନେବା )

ଦାୟିତ୍ୱ ଯେତେ ବିରାଟ ହେଲେ ମଧ କର୍ତ୍ତବ୍ୟ ଦୃଷ୍ଟିରୁ , ଭୟ କରି ମୁଁ କେବେ ପଛେଇ ଯିବିନି । କାରଣ ତୁମଠାରୁ ଶୁଣିଛି, କର୍ତ୍ତବ୍ୟ ହିଁ ଈଶ୍ୱର - ଆଉ ମୁଁ ତୁମର ସ୍ତ୍ରୀ । ରହିଲି । ଫେରିବା ପୂର୍ବରୁ ଜଣାଇବି ।

***

ପାର୍ଥ- (ବ୍ୟଙ୍ଗ ହସ ସହ) କର୍ତ୍ତବ୍ୟ ମୋର ଈଶ୍ୱର, ଆଉ ତୁମେ ମୋର ସ୍ତ୍ରୀ ! ସମ୍ମାନ ତୁମର କିଛି ରୋଟି, କପଡା ନୁହେଁ କାଞ୍ଚନ , ତୁମେ ସେଥିରୁ ଲେଭି ଉଠାଇ କଣ୍ଟ୍ରୋଲ ଦରରେ ବିକ୍ରି କରିଦେବ କିମ୍ବା ମକାନ ନୁହେଁ ଯେ ସିଲିଂ କରେଇନେବ । ତୁମର ସେ Beg,borrow or stealର ଫର୍ମୁଲା ଏଠି କିଛି କାମ କରିବନି । (ଚିଠି ଗୁଡ଼ାକ ଟେବୁଲ ଉପରେ ପକାଇ ଦେଇ ଚାକରକୁ ଡାକ ପକାଇଲେ) ବୀର ! (ଭିତରୁ-ଆଜ୍ଞା ) ଟିକେ ପାଣି ଉଷୁମ କରି ରଖ । ମୁଁ ଔଷଧ ଖାଇବି ।

(ଚିନ୍ତିତ ଭାବରେ ଏପଟ ସେପଟ ହେଉ ହେଉ )

(ଭିତରୁ -ମୁଁ ଆସିପାରେ ?) ଆସନ୍ତୁ ।

(ପ୍ରବେଶ କରିଛନ୍ତି ଫାଦର ଫ୍ରାନସିସ୍ । ଉଦ୍‌ବ୍ୟକ୍ତ ଥିବା ପରି ମନେ ହେଉଥିଲେ ।)

ଫ୍ରାନସିସ୍ - ଅଶୋକ ବାବୁ ଘରେ --- ?

ପାର୍ଥ - ନା । ସେ ଏଇ ଅଳ୍ପ ସମୟ ହେଲା ବାହାରକୁ ଚାଲିଗଲା । କିଛି ଦରକାର ଥିଲା ? ---ମୁଁ ତାର ବାପା ।

ଫ୍ରନସିସ୍ - ମୁଁ ଏଠିକାର ମିଶନର ଫାଦର । ଫାଦର ଫ୍ରାନସିସ୍ ।

ପାର୍ଥ - ନମସ୍କାର । ଆସନ୍ତୁ, ବସିବା । ଆପଣ ବ୍ୟସ୍ତ ଥିଲା ପରି---

ଫ୍ରାନସିସ୍ -ନା, ମୁଁ ମୋଟେ ବ୍ୟସ୍ତ ହେଉନି କି ବସିବାକୁ ଆସିନି ।

ପାର୍ଥ - ତେବେ କୁହନ୍ତୁ , ମୁଁ ଆପଣଙ୍କ ପାଇଁ----

ଫ୍ରାନସିସ୍ -ନା, ଆପଣ କିଛି କରିବା ଦରକାର ନାହିଁ । ତେବେ ଆପଣ କିଛି ଜାଣିବା ଉଚିତ । କିନ୍ତୁ ---

ପାର୍ଥ - ଚା, କଫି,---ସର୍ବତ ?

ଫ୍ରାନସିସ୍ -ନା, କିଛି ଦରକାର ନାହିଁ । ଅଶୋକ ବାବୁ ଫେରିବେ କେତେବେଳେ ? ଯାଇଛନ୍ତି କୁଆଡେ ?

ପାର୍ଥ - ତା' ମୁଁ କହିବା ସମ୍ଭବ ନୁହେଁ । ମାନେ ଠିକ୍ ଜାଣେନି । ତେବେ ଫେରିଲେ

ଆପଣଙ୍କ ପାଖକୁ ପଠେଇ ଦେବି ।

ଫ୍ରାନସିସ୍ - ନା, ପଠାଇବା ଦରକାର ପଡିବନି । ମୁଁ ଖୋଜି ନେବି । ତେବେ ଆସିଛି ଯେତେବେଳେ ଆପଣଙ୍କଠୁ ଅନ୍ତତଃ ଗୋଟାଏ କଥା ମୋର ବୁଝିଯିବା ଉଚିତ।

ପାର୍ଥ - ପଚାରନ୍ତୁ ।

ଫ୍ରାନସିସ୍ -ଆପଣ ନୈଷ୍ଠିକ ହିନ୍ଦୁ । ଆବଶ୍ୟକ ହେଲେ ମୋ ସହିତ ବନ୍ଧୁତ୍ୱ ପ୍ରତିଷ୍ଠା କରିବା ପାଇଁ ଆପଣ କେତେଦୂର ସହମତ ହୋଇପାରିବେ ?

ପାର୍ଥ - ବନ୍ଧୁତ୍ୱ ? ଆପଣ ଗୋଟାଏ ଅତି ବ୍ୟାପକ ଓ ବହୁମୁଖୀ ସମ୍ପର୍କର କଥା କହୁଛନ୍ତି ।

ଫ୍ରାନସିସ୍ - ମୋର ତା ହେଲେ ଆଉ ଟିକେ ସ୍ପଷ୍ଟ ହେବା ଉଚିତ । ଯଦି ଆପଣଙ୍କ ଘରକୁ ମୋ ଝିଅ ବୋହୂ ହୋଇ ଆସେ , ତେବେ କେମିତି ଭାବରେ ଗ୍ରହଣ କରିବେ ତାକୁ ?

ପାର୍ଥ - (ଚିନ୍ତା କରି) ମୋ ବୋହୂ ହେବା ପୂର୍ବରୁ ଆପଣଙ୍କ ଝିଅକୁ ଅଶୋକର ସ୍ତ୍ରୀ ହେବାକୁ ପଡିବ । ଜାତି– ଧର୍ମ ଅପେକ୍ଷା ମୋ ଦୃଷ୍ଟିରେ କର୍ମ ହିଁ ମହତ୍ତର । ସେମାନଙ୍କ ଜୀବନର କର୍ମ ପ୍ରବାହ ଯଦି ଆନନ୍ଦମୟ ହୋଇପାରିବ, ମୋର ପ୍ରତିବାଦ କରିବାର କୌଣସି କାରଣ ନାହିଁ । ବରଂ ମୁଁ ଖୁସି ହେବି ।

ଫ୍ରାନସିସ୍ - ମୋର କିନ୍ତୁ ପ୍ରତିବାଦ କରିବାର ଅଛି । କେବଳ ଅଶୋକ କିମ୍ବା ମୋନା ଅଥବା ଆପଣ ଓ ମୁଁ ଚାହିଁଲେ ବିବାହ ହୋଇପାରେନା । ବିବାହ ପୂର୍ବରୁ ଈଶ୍ୱରଙ୍କ ଆଶୀର୍ବାଦ ଆବଶ୍ୟକ ଏବଂ ତା ପାଇବାକୁ ହେଲେ ଅଶୋକର ବିଧିବଦ୍ଧ ଭାବେ ମୋର ଧର୍ମ ଗ୍ରହଣ କରିବାକୁ ପଡିବ ।

ପାର୍ଥ - (ହସି) ବନ୍ଧୁତ୍ୱ ପରି ଈଶ୍ୱରଙ୍କ ଆଶୀର୍ବାଦକୁ ଆପଣ ସୀମିତ କରି ଦେଉନାହାନ୍ତି ତ ?

ଫ୍ରାନସିସ୍ -ଜଣେ ଧର୍ମଯାଜକ ଭାବେ ମୋର ସେ ଧାରଣା ଯଥେଷ୍ଟ ଅଛି । ମୁଁ କୌଣସି ଧର୍ମର ବିରୋଧ କରେନାହିଁ । ଛୋଟ ବଡ଼ କରି ବିଚାର କରେନି । ମାତ୍ର

ପ୍ରତ୍ୟେକ ଧର୍ମ ତାର ନିର୍ଦ୍ଦିଷ୍ଟ ସୀମା ଅର୍ଥାତ୍ ନିର୍ଦ୍ଧାରିତ ନୀତିଗତ ଶୃଙ୍ଖଳା ଭିତରେ ଆବଦ୍ଧ ନରହିଲେ କେହି ନିଜର ସ୍ୱତନ୍ତ୍ରତା ରକ୍ଷା କରି ପାରିବେନି ।

ପାର୍ଥ - ଧର୍ମଗତ ସ୍ୱତନ୍ତ୍ରତା କଣ ଏ ମଣିଷ ପାଇଁ ଏକ ଅପରିହାର୍ଯ୍ୟ ଆବଶ୍ୟକତା ?

ଫ୍ରାନସିସ୍ - ନିଶ୍ଚୟ । ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ଯାତ୍ରା କରିବାକୁ ହେଲେ ମାର୍ଗ ନିରୂପଣ କରିବାକୁ ହିଁ ପଡ଼ିବ । ସେ ମାର୍ଗର ରୂପରେଖରେ ସ୍ୱତନ୍ତ୍ରତା ନରହିଲେ ଲକ୍ଷ୍ୟ ନିର୍ଦ୍ଧାରଣ ଅସମ୍ଭବ ।

ପାର୍ଥ - ସ୍ୱତନ୍ତ୍ରତା ରକ୍ଷା କରିବା ପାଇଁ ଯେ ସଂକୀର୍ଣ୍ଣ ହେବାକୁ ପଡ଼ିବ, ଏଇଟା ଅନ୍ତତଃ ମୁଁ ଗ୍ରହଣ କରିପାରୁନି ।

ଫ୍ରାନସିସ୍ - ଆପଣ କଣ ଗ୍ରହଣ କରିବେ ନକରିବେ ସେଇଟା ଆପଣଙ୍କର ବ୍ୟକ୍ତିଗତ ଦାୟିତ୍ୱ । ମୁଁ କିନ୍ତୁ ମୋର ଏଇ ନିଶ୍ଚିତ ମତାମତ ଦେଇ ଯାଉଛି ଯେ ଅଶୋକ ମୋ' ଝିଅ ମୋନାକୁ ବିବାହ କରିବା ପୂର୍ବରୁ ଧର୍ମାନ୍ତର ଗ୍ରହଣ କରିବାକୁ ପଡ଼ିବ । ଆଉ ଅଶୋକ ନିଜର ପ୍ରତିଶ୍ରୁତି ରକ୍ଷା କରି ମୋନାକୁ ବିବାହ କରିବାକୁ ବାଧ । ଏ କଥା ଆପଣ ଅନ୍ତଃତ ଜାଣି ରଖିବା ଉଚିତ । (ପ୍ରସ୍ଥାନ)

ପାର୍ଥ - ଅଶୋକ ମୋନାକୁ ବିବାହ କରିବ ?(ବ୍ୟସ୍ତ ଭାବେ) ତେବେ ସେ ଲିଲି ପୁଣି କିଏ ? ବିପ୍ଳବ ହୁଏତ ଆଜି ବୈଶାଖୀକୁ ବିବାହ କରିବ । ହେଲେ ଟିଙ୍କୁ ଆଜି ତା' ପାଇଁ କଣ ? ଟିଙ୍କୁ, ସାମାଜିକ ଆଉ ଶାସ୍ତ୍ରୀୟ ବିବାହର ପରିଣାମ ଆଜି ତୋତେ ଅତିଷ୍ଠତା ଭିତରକୁ ଟାଣି ନେଉଛି । ସତ୍ୟକୁ ପ୍ରିୟ ଭାବରେ ପରିବେଷଣ କରିବାକୁ ତୁ ଆଜି ଅକ୍ଷମ । ଆଉ କାଞ୍ଚନ ! ତୁମେ ବ୍ୟକ୍ତିଗତ ଭାବେ ସମାଜର ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ନିକଟରୁ ନାରୀର ସମ୍ମାନ ଦାବି କରିବ । ତୁମର ଏ ଦାବି , ତୁମରି ପୁଅ ଅଶୋକ ପାଖରେ ଥରେ ଉପସ୍ଥାପନ କରି ଦେଖ । ମୋର ଭୟ ହେଉଛି କାଞ୍ଚନ , ସେ ହୁଏତ ମାତୃ ରୂପିଣୀ ନାରୀର ପ୍ରତିନିଧି ନିଜର ମମିର ଦାବିପୂର୍ଣ୍ଣ ଅଞ୍ଜଳି ଭିତରକୁ

Donation ନାଁରେ ବିଡାଏ ନୋଟ୍ କିମ୍ବା ଆବାହିକା ପରି ଗୋଟାଏ ଫମ୍ପା ପଦବୀ ଫିଙ୍ଗି ଦେଇ କହିବ Mummy, I know, you are now quite satisfied.

ଅବୋଧ - (ପ୍ରବେଶ କରି) Dad you know , Iam never satisfied ଆପଣଙ୍କ ଉଷୁମ ପାଣି ଗରମ , ଗରମ ପାଣି ବାମ୍ପ ହୋଇ ଆକାଶକୁ ଉଠି ଯିବାକୁ ବସିଲାଣି । ବିଚରା ବୀରର କି ବିକଳ ଅବସ୍ଥା ? ସେ କୁଆଡେ ଦୁଇଥର ଆସି ଫେରିଗଲାଣି ।

ପାର୍ଥ - ଆଚ୍ଛା ଅବୋଧ ! ତୁ ସେ ଫାଦର ଫ୍ରାନସିସ୍‌ଙ୍କ ଝିଅ ମୋନାକୁ ଜାଣୁ ?

ଅବୋଧ - ସେ' ତ ମୋ' ସୋସାଇଟି ମେଟ୍ ।

ପାର୍ଥ - ସେ ଅଶୋକକୁ ବିବାହ କରିବ ।

ଅବୋଧ - କିଏ କହିଲା ?

ପାର୍ଥ - ନିଜେ ଫାଦର ଫ୍ରାନସିସ୍ ।

ଅବୋଧ - ଅସମ୍ଭବ । ଏହା କଣ ଗୋଟାଏ ପ୍ରସ୍ତାବ ?

ପାର୍ଥ - ନା । ଅଶୋକର ପ୍ରତିଶ୍ରୁତି ଅନୁସାରେ , ଫାଦର ଫ୍ରାନସିସ୍ କୁହନ୍ତି ଏହା ଏକ ନିଶ୍ଚିତତା ଆଉ ସେଥିପାଇଁ ଅଶୋକ ଧର୍ମାନ୍ତର ଗ୍ରହଣ କରିବା ଆବଶ୍ୟକ ।

ଅବୋଧ - ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁନି Dad । ମୋନା ପ୍ରମିଶ୍ କରିଛି ସେ କେବେ ବିବାହ କରିବନି ।

ପାର୍ଥ - ମୋନା ଶପଥ କରିଛି କାହା ପାଖରେ ?

ଅବୋଧ - ଅନ୍ୟ କାହା ପାଖରେ ମୁଁ ଜାଣିନଥିଲେ ମଧ ମୋ ପାଖରେ କିନ୍ତୁ ଅନେକ ଥର ----।

ପାର୍ଥ - ତୋ ପାଖରେ ?

ଅବୋଧ - ହଁ Dad ,ମୁଁ ତାର best boy freind ।

ପାର୍ଥ - ଓଃ ଅବୋଧ , କଣ ? କଣ କରୁଛ ତୁମେ ସବୁ ? କଣ ହୋଇଛି ତୁମମାନଙ୍କର ?

ଅବୋଧ - ଏଥିରେ ଆପଣ ଏତେ ବିବ୍ରତ କାହିଁକି ଡ୍ୟାଡ୍ ?

ପାର୍ଥ - କିଏ ? କିଏ ଆଉ ବିବ୍ରତ ହେବ ? ମୋ କର୍ମମୟ ଜୀବନ ଭିତରେ ମୁଁ ତୁମମାନଙ୍କୁ କେବେ ଅବହେଳା କରିଛି ? ମୋର ମତାମତ କିମ୍ବା ଚିନ୍ତାଧାରାକୁ ତୁମେ କେହି ହେଲେ ଜଣେ ବି ଗ୍ରହଣ କରିପାରିଲନି ? ଅନ୍ତତଃ ଥରେ ହେଲେ ଚିନ୍ତା କରିବନି ?ମୋର ସମସ୍ତ ଯତ୍ନ,ସମସ୍ତ ପ୍ରଚେଷ୍ଟାର ଫଳ କଣ ଏଇଆ ? ଆମମାନଙ୍କ ପାରିବାରିକ ସମ୍ପର୍କ କଣ ?

ଅବୋଧ - ଡ୍ୟାଡ୍, ଆପଣ ଅଯଥା ଉତ୍ତେଜିତ ହୋଇ ପଡୁଛନ୍ତି । ଚାଲନ୍ତୁ ଔଷଧ ଖାଇବେ । ମୁଁ କଲ୍ ଟା ଆସିଲେ ଏକ୍ସଟେନସନ୍‌ରେ ଡାଇଭର୍ଟ କରିଦେବି

ପାର୍ଥ- ହଁ, ତୁ ଠିକ୍ କହିଛୁ । ମୁଁ ଅଯଥା ଉତ୍ତେଜିତ ହୋଇପଡୁଛି । ମୋର ଔଷଧ ଦରକାର । ମୁଁ ଆଜି ରୁଗ୍‌ଣ, ମୁଁ ଆଜି ମୋର ବୟସର ଗୁରୁଭାରରେ ଭାରାକ୍ରାନ୍ତ, ଜରାକ୍ରାନ୍ତ । ନିଜର ଭାରାକ୍ରାନ୍ତ ଉତ୍ତେଜନାକୁ ନିୟନ୍ତ୍ରିତ କରିବା ଆଜି ମୋ ସାମର୍ଥ୍ୟ ବାହାରେ । ମୁଁ ଆଜି ମୃତ୍ୟୁନ୍ମୁଖୀ । ତାହା ହିଁ ମୋପାଇଁ ଆଉ ଅବଶିଷ୍ଟ ଏକମାତ୍ର ସତ୍ୟ । ହଁ - ଏକମାତ୍ର ସତ୍ୟ । (କ୍ରମେ ପ୍ରସ୍ଥାନ)

ଅବୋଧ - ଡ୍ୟାଡ, ତୁମର ଯଦି ପାଗଳ ହୋଇଯିବାର ଆଶଙ୍କା ଥାଏ, ଆସ, ଥରେ ଆମ ହିପି ସୋସାଇଟି ହଲରେ ମାତ୍ର ଘଣ୍ଟାକ ପାଇଁ ବସି ଆସିବ । ଦେଖି ଆସିବ ସେଠି No age, No limit, --No family-- No consequences ବିନୋଦନ୍ତି ସର୍ବେ ଅମୃତସ୍ୟ ପୁତ୍ରାଃ---

(ହସି ଉଠିଛି -- ପ୍ରବେଶ କରିଛି ଅଶୋକ ଓ ଅବୋଧକୁ ଦେଖି )

ଅଶୋକ - ଅବୋଧ ତୁ ଘରେ ଅଛୁ ? ଗୁଡ୍ ।

ଅବୋଧ - କାହିଁକି କିଛି କାମ ଥିଲା ? ଡ୍ୟାଡ୍‌ଙ୍କ ସେ କଲ୍‌ଟା ଏ ପର୍ଯ୍ୟନ୍ତ ବି ଆସିନି ।

ଅଶୋକ - କାମ ମାନେ, ମୁଁ ତୋତେ ଗୋଟାଏ ଚେକ୍ ଦେବି । ତୁ ସେଇଟାକୁ ନେଇ ଅନାଥ ଆଶ୍ରମର ପରିଚାଳକ ଦୀନବନ୍ଧୁ ବାବୁଙ୍କୁ ଦେଇଦେବୁ । ପରସନାଲି

ଅବୋଧ - ଅନାଥ ଆଶ୍ରମର ଆନୁଆଲ ଡୋନେସନ ତ ସେମାନେ ନେଇ ସାରିଛନ୍ତି।

ଅଶୋକ - ମୁଁ ଜାଣେ । ତୋର କାମ ହେଲା ପାଞ୍ଚହଜାର ଟଙ୍କାର ଚେକ୍‌ଟା ନେଇ

ଯାଇ ସେ ଯଦି କେବଳ ଆଶ୍ରମଠି ଥାନ୍ତି ; ତେବେ ତାଙ୍କୁ ଦେଇଦେବୁ ।
ଘରଠିକି ମଧ୍ୟ ଯିବା ଦରକାର ନାହିଁ । ବାସ୍ ।

ଅବୋଧ - ପାଞ୍ଚ ହଜାର ଟଙ୍କାର ! ଠିକ୍ ଅଛି । କିନ୍ତୁ ଭାଇ ମୋର ବି ଗୋଟାଏ ଚେକ୍ ଦରକାର ।

ଅଶୋକ - ଚେକ୍ କାହିଁକି ? ତୋ କମିସନ ତୁ କ୍ୟାସରେ ନେବୁ ।

ଅବୋଧ - କମିସନ ନୁହେଁ । ପାଞ୍ଚହଜାର ଟଙ୍କାର ଗୋଟାଏ Travellers cheque ଆମ ସୋସାଇଟି ତରଫରୁ Seeking the solace କ୍ୟାମ୍ପେନ୍‌ରେ ମୁଁ ଆଉ ମୋନା All India tour କରିବୁ ।

ଅଶୋକ - Seeking the solace ମାନେ ଶାନ୍ତି ଖୋଜି ବାହାର କରିବ ? ଏ ମୋନା ପୁଣି କିଏ ?

ଅବୋଧ - ଫାଦର ଫ୍ରାନସିସ୍‌ଙ୍କ ଝିଅ । ଆପଣ କୁଆଡ଼େ ତାକୁ ବିବାହ କରୁଛନ୍ତି ।

ଅଶୋକ - What nonsencse - ଏ ସବୁ କଣ କହୁଛୁ ?

ଅବୋଧ - ମୁଁ ମୋଟେ କହୁନି । ବରଂ ପ୍ରତିବାଦ କରିଛି ।

ଅଶୋକ - ତେବେ--- ?

ଅବୋଧ - ଫାଦର ଫ୍ରାନସିସ ନିଜେ ଆସି , ଏଇ ଅଳ୍ପ ସମୟ ପୂର୍ବରୁ ଡ୍ୟାଡ୍‌ଙ୍କୁ କହିଗଲେ । ଆଉ, ସେ ମୋତେ ପଚାରୁଥିଲେ ।

ଅଶୋକ - ଫାଦର ନିଜେ ଆସିଥିଲେ ?

ଅବୋଧ - Most interesting, ଆପଣଙ୍କୁ ଧର୍ମ ମଧ୍ୟ ପରିବର୍ତ୍ତନ କରିବାକୁ ପଡୁଛି ।

ଅଶୋକ - (ବିବ୍ରତତାକୁ ଚାପି ରଖି) ଠିକ୍ ଅଛି । ସେ କଥା ମୁଁ ବୁଝିବି । ତୁମେ ସବୁ ଟୁର୍‌ରେ କେବେ ଯାଉଛ ?

ଅବୋଧ - ଶୁଭସ୍ୟ ଶୀଘ୍ରମ୍ ।

ଅଶୋକ - ଡାଡି ଏ କଥା ଜାଣନ୍ତି ?

ଅବୋଧ - ଜାଣିବେ ତ ନିଶ୍ଚୟ । ତେବେ ତାଙ୍କ ଜାଣିବାରେ କଣ ଅଛି ? ଆପଣ ଟଙ୍କା ଦେଲେ ହେଲା ।

ଅଶୋକ - କିନ୍ତୁ ସେ ନଜାଣି ମୁଁ ତୋତେ ଟଙ୍କା ଦେବି କେମିତି ?

ଅବୋଧ - Exactly, in the same way and same amount. ଅନାଥାଶ୍ରମ ପାଇଁ ଯେଉଁ ପରିମାଣରେ ଟଙ୍କା ଦେଲେ ଆପଣଙ୍କୁ କୌଣସି ଅନୁମତି ଦରକାର ପଡିନି, ଠିକ୍ ସେମିତି ଆପଣ ସେତିକି ଟଙ୍କା ମୋତେ ଦେଇପାରିବେ ।

ଅଶୋକ - All right କେବଳ ତୋତେ ପାଞ୍ଚ ହଜାର ଟଙ୍କା ଦେବିନି, ତୁମ ଦୁହିଁଙ୍କ ପାଇଁ ଦଶହଜାର ଟଙ୍କା ଦେବି । କିନ୍ତୁ ଗୋଟାଏ କଣ୍ଡିସନ, ଦଶହଜାର ଟଙ୍କା ନେଇ ତୁ ଏବଂ ମୋନା ଦୁହେଁ ଯିବ କିମ୍ବା କିଛି ନ ନେଇ କେହି ଯିବନି ।

ଅବୋଧ - କିନ୍ତୁ---

ଅଶୋକ - କିଛି ନାହିଁ । That is one and only condition. ଆ, ସେ ଚେକ୍‌ଟା ନେଇଯିବୁ (ପ୍ରସ୍ଥାନ)

ଅବୋଧ - Sorry Tinku. ତୋ ଦାବିଟା ମୁଁ ଏଠି ଉତ୍ଥାପିତ କରିପାରିନି । ତା ପାଇଁ ସ୍ଥାନ ଡାଇନିଂ ହଲ । କାଳ, ଡିନର ଟାଇମ ଏବଂ ପାତ୍ର ସ୍ୱୟଂ ପାର୍ଥ ଦାସ our dear Dad.

(ଅଶୋକର ଯିବା ବାଟରେ ପ୍ରସ୍ଥାନ -- ମଞ୍ଚ ଅନ୍ଧକାର)

(ମଞ୍ଚ ଆଲୋକିତ ହେବା ପରେ ଦେଖାଗଲା ମଞ୍ଚସଜାରେ ଏକ ଭିନ୍ନ ପରିବେଶର ସଂକେତ । ଅନାଥାଶ୍ରମର ବୈଠକଘର । ଅପେକ୍ଷମାଣ ଫାଦର ଫ୍ରାନସିସ୍ ଚିନ୍ତାଶୀଳ ଭାବରେ ପଦଚାରଣା କରୁଥିଲେ । ପ୍ରବେଶ କରିଛନ୍ତି ଦୀନବନ୍ଧୁ ବାବୁ । ଫାଦରଙ୍କୁ ଦେଖି ଆଦରରେ ହାତ ବଢ଼େଇ ଦେଇ )

ଦୀନବନ୍ଧୁ- ଆରେ ତ୍ରାଣକର୍ତ୍ତା ଫାଦର ଯେ ମୋତେ ଅପେକ୍ଷା କରିଛନ୍ତି । ବୋକା ପିଅନଟା ଏ ପର୍ଯ୍ୟନ୍ତ ଲୋକ ଚିହ୍ନିଲାନି । (କର ମର୍ଦ୍ଦନ କରି) କୁହନ୍ତୁ ଏ ସେବକ ଆପଣଙ୍କ ପାଇଁ କେଉଁ ସେବାର ସୁଯୋଗ ପାଇଛି ?

ଫ୍ରାନସିସ୍ - ଦେଖ ଦୀନବନ୍ଧୁ! ଧର୍ମ ନିର୍ବିଶେଷରେ ତୁମେ ମୋର ଜଣେ ବିଶେଷ ବନ୍ଧୁ । ମିଶନ ଆଉ ଆଶ୍ରମ ପରି ଆମ ଦୁହିଁଙ୍କ ମଧ୍ୟରେ ପରସ୍ପର ପ୍ରତି ସହାୟତାର କେବେ ଅଭାବ ରହିନି କି ରହିବ ନାହିଁ ।

ଦୀନବନ୍ଧୁ - ଚାଲନ୍ତୁ ଘରେ ବସି ---

ଫ୍ରାନସିସ୍ - ନା, ମୋ ହାତରେ ସମୟ ନାହିଁ । ଏପରିକି ପ୍ରାରମ୍ଭିକ ଆଲୋଚନା ମଧ କରିବା ସମ୍ଭବ ନୁହେଁ । ମୁଁ ଏଇ ଗୋଟଏ ଦୁଇଟା କଥା ବୁଝି ଫେରିଯିବି ।

ଦୀନବନ୍ଧୁ - ମନେ ହେଉଛି କିଛି ଗୋଟାଏ ବିଶେଷ କଥା ନିଶ୍ଚୟ । ତଥାପି ପଚାରନ୍ତୁ । ମୁଁ ଜାଣିଥିଲେ ନିଶ୍ଚୟ ଆପଣଙ୍କୁ କେବେ ---

ଫ୍ରାନସିସ୍- ସେ ବିଶ୍ୱାସ ଅଛି ବୋଲିତ ଆସିଛି ।

ଦୀନବନ୍ଧୁ - ତେବେ--- କଥା କଣ ?

ଫ୍ରାନସିସ୍ - ଶିଳ୍ପପତି ଅଶୋକ ଦାସ ସମ୍ପର୍କରେ ମୋର କେତେଟା ବିଷୟ ଜାଣିବାର ଅଛି ।

ଦୀନବନ୍ଧୁ - ଅଶୋକ ଦାସ - ମାନେ ଆମର ପାଟ୍ରନ ଇନ୍ ଚିଫ୍ ?

ଫ୍ରାନସିସ- ହଁ ସେଇ ଅଶୋକ । କଥା ବଢ଼ାଇ ଲାଭ ନାହିଁ । ମୁଁ ଜାଣିବାକୁ ଚାହେଁ, ତୁମ ଝିଅ ଲିଲି ଆଉ ତାଙ୍କର ସମ୍ପର୍କ ବିଷୟରେ ତୁମର ଧାରଣା ଏବଂ ମତାମତ କଣ ?

ଦୀନବନ୍ଧୁ - (ଚିନ୍ତାକରି) ଦେଖନ୍ତୁ ଏଇଟା ଅତ୍ୟନ୍ତ ପାରିବାରିକ ଏବଂ ନିହାତି ଗୋଟାଏ ବ୍ୟକ୍ତିଗତ ----

ଫ୍ରାନସିସ୍ - ତୁମେ ନ ଚାହିଁଲେ ମୁଁ ମୋଟେ ବାଧ କରି ପାରିବି ନାହିଁ । ତେବେ ଆଗରୁ କହିଛି, ପରସ୍ପରର ସହାୟତା ଆବଶ୍ୟକତା ଦୃଷ୍ଟିରୁ ହିଁ ମୁଁ ଏ କଥା ପଚାରୁଛି । ଏଥିରେ ଆମ ଦୁହିଁଙ୍କ ସ୍ୱାର୍ଥ ଜଡ଼ିତ ।

ଦୀନବନ୍ଧୁ - ଦୁହିଙ୍କର ସ୍ୱାର୍ଥ ? କଥା କଣ ମୋତେ ପରିଷ୍କାର କୁହନ୍ତୁ ।

ଫ୍ରାନସିସ୍ - ଠିକ୍ ଅଛି । ମୁଁ ଯେତେବେଳେ କହିବାକୁ ଆସିଛି, ପ୍ରଥମେ ମୋତେ ହିଁ କହିବାକୁ ପଡିବ । ତୁମେ ବିଚାର କରି ଦେଖିବ ---- ଅଶୋକ ମୋ ଝିଅ ମୋନାକୁ ବିବାହ କରିବାକୁ ପ୍ରତିଶ୍ରୁତି ଦେଇ ସାରିଛି । ମୋନାର ମତାମତକୁ କୌଣସି ଅପେକ୍ଷା ନକରି ଦୀର୍ଘ ଏକ ବର୍ଷ ଧରି ମୁଁ ଏ ବିଶ୍ୱାସ ପୋଷଣ କରି ଆସିଛି ଓ ମୁଁ ଚାହେଁ ଧର୍ମାନ୍ତର ଗ୍ରହଣ କରି ଅଶୋକ ମୋନାକୁ ବିବାହ କରନ୍ତୁ । ମୋନା ପାଇଁ କଣ ସର୍ବୋତ୍ତମ ତା ମୁଁ ମୋନା ଅପେକ୍ଷା ବେଶି ଜାଣେ । ଅନ୍ତତଃ ମୋନା ଏକଥା ଅସ୍ୱୀକାର କରିବନି ।

ଦୀନବନ୍ଧୁ - ଯଦି ଅସ୍ୱୀକାର କରେ ?

ଫ୍ରାନସିସ୍ - ଅସମ୍ଭବ । Daughter of Father Francis must be wise. ମୋ ମତାମତ ଉପରେ ତାର ଆସ୍ଥା ରଖିବା କେବଳ କର୍ତ୍ତବ୍ୟ ନୁହେଁ, ସେ ବାଧ୍ୟ ।

ଦୀନବନ୍ଧୁ - ମୋ କଥା କିନ୍ତୁ ଫାଦର ସମ୍ପୂର୍ଣ୍ଣ ଓଲଟା । ମୋ ମତାମତକୁ କୌଣସି ଅପେକ୍ଷା ନକରି ଲିଲି ଚାହେଁ ଅଶୋକକୁ ବିବାହ କରିବ ଏବଂ ଅଶୋକ ମଧ ସେ ପ୍ରତିଶ୍ରୁତି ଦେଇ ସାରିଛି । ମୋତେ ନୁହେଁ; ଲିଲିକୁ ।

ଫ୍ରାନସିସ୍ - ଆଶ୍ଚର୍ଯ୍ୟ । ତୁମେ ତାର ବାପା ଅଥଚ ତୁମେ ---

ଦୀନବନ୍ଧୁ - ନାଚାର, ନିରୁପାୟ । ଆପଣ ହୁଏତ ବୁଝି ପାରିବେନି ଫାଦର, କାରଣ ଆପଣ ହେଉଛ ପ୍ରେମମୟ ଈଶ୍ୱରଙ୍କ ପୂଜାରୀ । ଗୋଟାଏ ମହାନ ରୂପକଳ୍ପ ଆଉ ବିଶ୍ୱାସର ପୂଜାରୀ । ସେବାର, ବାସ୍ତବତାର ପୂଜାରୀ ମୁଁ । ଅସମର୍ଥ

ଆଉ ଆର୍ତ୍ତପ୍ରାଣ ବହୁ ଅସହାୟ ମଣିଷମାନଙ୍କର ମାନସିକ ବିଶ୍ଳେଷଣକରି କରି ମୁଁ ଠିକ୍ ଭାବେ ଜାଣେ ଲିଲି ପରି ଗୋଟାଏ ମାତୃହରା ଶିଶୁ ମୋ ପରି ଜଣେ ବହୁଧା ବିଭକ୍ତ ପିତା ନିକଟରୁ ଦାବି କରିଥିଲା କେତେ ଆଉ ପାଇଛି ତାର କେତେ ଭାଗରୁ କେତେ ଭାଗ ? ମୁଁ ହୁଏତ ତାକୁ ସୁଖୀ କରିପାରିଛି, ହେଲେ ଶାନ୍ତି ଦେଇପାରିନି । ଅଶୋକ ସହ ତାର ବିବାହ ଯଦି ତାକୁ ସାମାନ୍ୟତମ ଶାନ୍ତି ଦେଇପାରେ , ମୁଁ ତାର ପ୍ରତିରୋଧ କରିବି କାହିଁକି ? ମୁଁ ବରଂ ଆପଣଙ୍କୁ ଅନୁରୋଧ କରୁଛି ଫାଦର, ଆପଣ ମଧ ତାକୁ ଦୟାକରି, ଆଶୀର୍ବାଦ କରନ୍ତୁ । ତୁମ ନିକଟରେ ଅଶୋକର ଯେଉଁ ପ୍ରତିଶ୍ରୁତି ଚପଳତା ଜ୍ଞାନ କରି ତାକୁ କ୍ଷମା କରିଦିଅନ୍ତୁ ।

ଫ୍ରାନସିସ୍ - ମୁଁ ଦେଖୁଛି ଅଶୋକକୁ ନେଇ ତୁମର ମାନସିକ ପ୍ରସ୍ତୁତି ମୋ ଅପେକ୍ଷା ଯଥେଷ୍ଟ ବେଶି । ତୁମେ ଯଦି ଚାହଁ ମୁଁ ତୁମ ଆଶ୍ରମରେ କିଛି ଦିନ ରହିଯିବି ଦୀନବନ୍ଧୁ । ମୋ ମାନସିକ ବିଶ୍ଳେଷଣ କରି ତୁମେ ଆଉ ଗୋଟିଏ ଦୁଃଖାନୁଭୂତିର ପରିଚୟ ପାଇ ପାରିବ । ଅଶୋକକୁ ଜ୍ୱାଇଁ କରିବା ପାଇଁ ତୁମେ ମୋ ସହ ପ୍ରତିଯୋଗିତା କରିବ ?

ଦୀନବନ୍ଧୁ -ନା ଫାଦର, ଆପଣ ମୋତେ ଭୁଲ ବୁଝୁଛନ୍ତି । ଆପଣ ହୁଏତ ଏ ପର୍ଯ୍ୟନ୍ତ ଜାଣିନାହାନ୍ତି ଯେ ଆପଣଙ୍କ ଝିଅ ମୋନା ମୋତେ ବିବାହ କରିବନି ଏବଂ ଅଶୋକ ମୋନାକୁ ପ୍ରତ୍ୟାଖ୍ୟାନ କରିସାରିଛି । ସେ ଦୁହିଁକୁ ବିବାହ ପରି ଗୋଟାଏ ପବିତ୍ର ବନ୍ଧନରେ ବାନ୍ଧିବା ଆଉ କେବେ ବି ସମ୍ଭବ ନୁହେଁ

ଫ୍ରାନସିସ୍ - ତୁମେ ବର୍ତ୍ତମାନ କହୁଥିଲ ନା, ମୁଁ ବିଶ୍ୱାସର ପୂଜାରୀ ଆଉ ତୁମେ ବାସ୍ତବତାର ? ବାସ୍ତବ ଜୀବନ ଭିତରେ ତୁମେ ସୁଖ ପାଇଛ, ହେଲେ ଶାନ୍ତି ପାଇନାହଁ । କିନ୍ତୁ ବିଶ୍ୱାସ ମୋତେ ଶାନ୍ତି ଦିଏ । ଆଉ ମୋନା ବିବାହକୁ ପ୍ରତ୍ୟାଖ୍ୟାନ କରୁ କିମ୍ବା ଅଶୋକ ମୋନାକୁ ପ୍ରତ୍ୟାଖ୍ୟାନ କରୁ ମୋର ବିଶ୍ୱାସ ଏ ଆପାତଃ ଅସମ୍ଭବ ବିବାହ, ଯେ କୌଣସି ପରିସ୍ଥିତିରେ ଯଦି ସମ୍ପୂର୍ଣ୍ଣ ହେବାର ସୁଯୋଗ ଆସେ , ତେବେ ସେ ଦୁହେଁ ଈଶ୍ୱରଙ୍କର

ଆଶୀର୍ବାଦ ପ୍ରାପ୍ତ ହୋଇ ଚିରଦିନ ଶାନ୍ତିରେ ରହିବେ । ଅତୀତ ତାଙ୍କୁ ଦୁଃଖ ଦେଇ ପାରିବନାହିଁ ।

ଦୀନବନ୍ଧୁ - ଆପଣଙ୍କ ବିଶ୍ୱାସ ଉପରେ ଆପଣଙ୍କର ଯଦି ଏତେ ଦୃଢ଼ତା ରହିଛି ତେବେ ମୋ ପାଖକୁ କାହିଁକି ଆସିଛନ୍ତି ଫାଦର ? ବିଶ୍ୱାସ ଅପେକ୍ଷା ବାସ୍ତବତା ହିଁ ମୋ ପାଇଁ ବେଶି ମହତ୍ତର । ଅଶୋକ ଯଦି ଆପଣଙ୍କ ଝିଅ ମୋନାକୁ ବିବାହ କରିବାର କୌଣସି ସମ୍ଭବନା ଥାଏ , କେବେ ବି ସମ୍ଭବ ହୁଏ ମୁଁ ଆପଣଙ୍କୁ ପ୍ରତିଶ୍ରୁତି ଦେଉଛି ଫାଦର , ଆପଣ ନିଶ୍ଚିତ ରହିପାରନ୍ତି । ମୁଁ କେବେ ବି ଆପଣଙ୍କ ନିକଟରେ ଅଭିଯୋଗ କରିବିନି । ମୋ ଝିଅ ଲିଲିର ଦାୟିତ୍ୱ ମୋର ।

(ପ୍ରବେଶ କରିଛି ଅବୋଧ )

ଅବୋଧ - ନମସ୍କାର ସାର୍ । (ଫାଦରଙ୍କୁ ଦେଖି) ଗୁଡ୍ ମର୍ଣ୍ଣିଂ ଫାଦର ।(ଚେକ୍ ବାହାର କରି) May I come in ? Yes come in ଭାରି ବୋର ଲାଗେ । ଏଇ ନିଅନ୍ତୁ ଅଶୋକ ଭାଇ ପଠେଇଛନ୍ତି ପାଞ୍ଚ ହଜାର ଟଙ୍କାର ଚେକ୍ ।

ଦୀନବନ୍ଧୁ - (ଚେକ୍ ନେଇ) ଧନ୍ୟବାଦ । ଭାଇଙ୍କୁ ମଧ ଧନ୍ୟବାଦ ଜଣାଇ ଦେବେ ।

ଅବୋଧ - ଆପଣଙ୍କ ଧନ୍ୟବାଦ ପାଇଁ ସେ ବି ଧନ୍ୟବାଦ ଦେବେ , ହେଲେ ମୁଁ ଆଉ ଆସିପାରିବିନି । (ସମସ୍ତେ ହସିଲେ)

ଫ୍ରାନସିସ୍ - ଆଚ୍ଛା ୟଙ୍ଗମ୍ୟାନ, ଅଶୋକ କେଉଁଠି ? ମୁଁ ତୁମ ଘରୁ ଖୋଜି ଫେରିଆସିଲି

ଅବୋଧ - ଫାଦର, ଆପଣଙ୍କୁ ମୋର ଗୋଟାଏ ସୁସମ୍ବାଦ ଦେବାର ଅଛି । ଅଶୋକ ଭାଇ ମୋ ପ୍ରସ୍ତାବ ଉପରେ ମୋନାକୁ ମଧ ଓବ୍ଲାଇଜ୍ କରିବେ ।

ଫ୍ରାନସିସ୍ - (ଖୁସିରେ) ସେ ତାହେଲେ ଧର୍ମାନ୍ତର ଗ୍ରହଣ କରିବ ।

ଦୀନବନ୍ଧୁ - ଅସମ୍ଭବ ।

ଫ୍ରାନସିସ୍ - ମୋ ବିଶ୍ୱାସ ଏତେ ଦୁର୍ବଳ ନୁହେଁ ଦୀନବନ୍ଧୁ ।

ଅବୋଧ - ବିଶ୍ୱାସ - ? ଧର୍ମାନ୍ତର -- ? କଥା କଣ ?

ଫ୍ରାନସିସ୍ - ଅଶୋକ ମୋନାକୁ ବିବାହ କରିବା ପାଇଁ ---

ଅବୋଧ - (ହସିଉଠି ମୁଣ୍ଡ ହଲାଇ ନାହିଁ କରୁ କରୁ ) ସରି ଫାଦର , କଥାଟା ଠିକ୍ ଭାବରେ କହି ନପାରି ମୁଁ ଆପଣଙ୍କୁ ଗୋଟାଏ ସମସ୍ୟା ଭିତରକୁ ଟାଣି ନେଲି । "ସିକିଂ ଦି ସୋଲେସ" କ୍ୟାମ୍ପେନରେ ଯୋଗ ଦେବାକୁ ମୁଁ ଏବଂ ମୋନା ଅଲ ଇଣ୍ଡିଆ ଟୁର୍ କରିବା ପାଇଁ ଦଶହଜାର ଟଙ୍କା ଫାଇନାନସ୍ କରିଛନ୍ତି ଅଶୋକ ଭାଇ Is not it an obligation? ।

ଫ୍ରାନସିସ୍ - Nonsense .

ଦୀନବନ୍ଧୁ - ଆଚ୍ଛା, ଆଚ୍ଛା, ସିକିଂ ଦି ସୋଲେସ ? ମାନେ ମୋନା ଆଉ ତୁମେ ଶାନ୍ତି ଖୋଜିବାକୁ ସାରା ଭାରତ ବୁଲିବ ? ଦେଖ, ଯଦି ତୁମେ ଶାନ୍ତିକୁ କେଉଁଠି ପାଅ ତେବେ ନ ଛାଡ଼ି ନେଇ ଆସିବ ।

ଫ୍ରାନସିସ୍ - ଖାଲି ନେଇ ଆସିବ କାହିଁକି ? ଆଣି ଏଇ ଅନାଥ ଆଶ୍ରମରେ ରଖି ଦେଇ ଯିବ । All stupid. All Fantastic.

(କ୍ରୋଧ ଜର୍ଜରିତ ଭାବେ ପ୍ରସ୍ଥାନ)

ଅବୋଧ - କଥା କଣ ? ଫାଦର ଏମିତି ରାଗି ଚାଲିଗଲେ ?

ଦୀନବନ୍ଧୁ - ତାଙ୍କର ଦୃଢ଼ ବିଶ୍ୱାସ ଭାଙ୍ଗିଗଲା । କ୍ରୋଧର ଆବରଣ ଦେଇ ସେ ନିଜକୁ ଲୁଚାଇବାକୁ ଚାହାଁନ୍ତି ।

ଅବୋଧ - ମୋ ଦ୍ୱାରା ସେ ଅପମାନିତ ହୋଇନାହାନ୍ତି ତ ?ସେ ଆସିଥିଲେ କାହିଁକି ?

ଦୀନବନ୍ଧୁ - ସେ କିଛି ନୁହେଁ ଅବୋଧ ! ତାଙ୍କର ଏବେ ବିଶ୍ୱାସ ଅଛି, ଅଶୋକ ମୋନାକୁ ବିବାହ କରିବ । ସେଇ କଥା ମୋତେ କହି ସେ ଚାହାନ୍ତି;ମୁଁ ଲିଲି ଆଉ ଅଶୋକର ବିବାହ ପ୍ରସ୍ତାବକୁ ପ୍ରତିରୋଧ କରିବି ।

ଅବୋଧ - ଲିଲି-- ? ମାନେ ଆପଣଙ୍କ ଝିଅ ଲିଲି ସହ ଅଶୋକ ଭାଇଙ୍କ ବିବାହ ପ୍ରସ୍ତାବ ?

ଦୀନବନ୍ଧୁ - ହଁ, ତାକୁ ଆଉ ପ୍ରସ୍ତାବ କହିବା ଆମମାନଙ୍କ ପକ୍ଷେ ଭୁଲ ହେବ ।

ଅବୋଧ - (ଚିନ୍ତାକରି)ଆପଣ ଠିକ୍ କହିଛନ୍ତି । ଏ ସବୁକୁ ପ୍ରସ୍ତାବ କହିବା ବୋକାମୀ

ଅଚ୍ଛା ସାର୍, ଅନାଥ ଆଶ୍ରମର ବାର୍ଷିକ ଦେୟ ପରେ ଏ ପାଞ୍ଚହଜାର ଟଙ୍କାର ବିଅରରସ୍ ଚେକ୍ --- ? ଆପଣ ଉତ୍ତର ଦେବାକୁ ଆଦୌ ବାଧ ନୁହନ୍ତି ।

ଦୀନବନ୍ଧୁ - ଭାଇଙ୍କଠୁ କିଛି ଜାଣିଛ ନା ଜାଣିବାକୁ ଚାହୁଁଛ ।

ଅବୋଧ - ଜାଣିଛି , କିନ୍ତୁ ଜାଣିଛି ବୋଲି ଜାଣିନି ।

ଦୀନବନ୍ଧୁ - ତୁମ ପରି ପିଲାଙ୍କ ସାଙ୍ଗରେ କଥାବାର୍ତ୍ତା ହେବା ଆମ ପାଇଁ ଗୋଟାଏ ସମସ୍ୟା । ନିହାତି ଯଦି ଜାଣିବାକୁ ଚାହଁ,ଭାଇଙ୍କଠୁ ବୁଝିନେବ । ଭଲ ହେବ ।

ଅବୋଧ - ଏକ୍‌ଜାଟଲି, ଏମିତି ଦିନେ ପାଞ୍ଚହଜାର ଟଙ୍କାର ବିଅରରସ୍ ଚେକ୍ ନେଇ ଫାଦର ଫ୍ରାନସିସ୍ ମୋତେ କହିଥିଲେ ; ବେଟର ଭାଇଙ୍କଠୁ ବୁଝିନେବ ।

ଦୀନବନ୍ଧୁ - ଫାଦର ଫ୍ରାନସିସ୍ -- ? କେବେ ?

ଅବୋଧ - ଭାଇଙ୍କୁ ପଚାରି ନେବେ । ମୁଁ ଆସୁଛି । (ଯିବାକୁ ଉଦ୍ୟତ)

ଦୀନବନ୍ଧୁ - ଶୁଣ ଅବୋଧ !

ଅବୋଧ - କୁହନ୍ତୁ , ମୋତେ ପୁଣି ମୋନା ପାଖକୁ ଯିବାକୁ ହେବ ।

ଦୀନବନ୍ଧୁ - ମୋନା ପାଖକୁ ?

ଅବୋଧ - କାହିଁକି ଡାକିଲେ କୁହନ୍ତୁ ।

ଦୀନବନ୍ଧୁ - ଫାଦର, ଆପଣ ଆଉ ମୋ ଭିତରେ ଯେଉଁ ଅଲୋଚନା ହେଲା ଅଶୋକ ଏସବୁ ଜାଣିବା କେତେ ଦୂର ଉଚିତ ?

ଅବୋଧ - (ହସି) ଯାଠାରୁ ଅଧିକ ଅନୁଚିତ କଥା କେବଳ ଜାଣନ୍ତି ନୁହେଁ , ଭାଇ କରିବାକୁ ଯାଉଛନ୍ତି ।

ଦୀନବନ୍ଧୁ - ମାନେ ? କଣ କହିବାକୁ ଚାହୁଁଛ ତୁମେ ?

ଅବୋଧ - ମୋ କଥାରେ ଅପଣ ମୋଟେ ବ୍ୟସ୍ତ ହୁଅନ୍ତୁନି ସାର୍ , ସେ ଆପଣଙ୍କ ଆଶ୍ରମର ପ୍ୟାଟର୍ନ ଇନ ଚିଫ୍ । ଆଉ ଆପଣଙ୍କ ପାଇଁ ଏ ଆଶ୍ରମ କେବଳ ଲିଲିଠାରୁ ନୁହେଁ - ଆପଣଙ୍କର ସମସ୍ତ ଆଦର୍ଶ , ଏପରିକି ନିଜ ଜୀବନଠାରୁ ମଧ ମହାନ । ତେଣୁ ମୋନା ପରି ଲିଲି ମଧ ଆମ ସୋସାଇଟିର ସଭ୍ୟା

ହୋଇ ସିକିଂ ଦି ସୋଲେସ କ୍ୟାମ୍ପରେ ଟୁର କରିଯିବା ପୂର୍ବରୁ, ଅତି କମରେ ଆହୁରି କେତେଟା ବିଅରରସ ଚେକ୍ ଏ ବର୍ଷକ ମଧ୍ୟରେ ଆଦାୟ କରି ନେଇ ପାରିବେ । ମୋତେ ଅସୁବିଧା ହେବନି । ଅବଶ୍ୟ ନିଜ ପାଇଁ ନୁହେଁ । ଅନେକ ଅନାଥ ଓ ଅକର୍ମଣ୍ୟ ସନ୍ତାନମାନଙ୍କ ପାଇଁ । ମୋନା ଏଣ୍ଡସ୍ ଆଣ୍ଡ ଲିଲି ଷ୍ଟାର୍ଟସ୍ । (ଦୃତ ପ୍ରସ୍ଥାନ)

ଦୀନବନ୍ଧୁ - (ଅବୋଧର ଚାଲିଯିବା ରାସ୍ତାକୁ ସ୍ତବ୍ଧ ହୋଇ ଅନାଇ ରହିଲେ ଓ ଚିନ୍ତା କରୁ କରୁ ) ଫାଦର ଫ୍ରାନସିସ୍ ଦୀର୍ଘ ବର୍ଷେ ହେଲା ପ୍ରତିଶ୍ରୁତି ପାଇ ମଧ୍ଧ ମୋନାକୁ ବିବାହ କରାଇପାରିଲେ ନାହିଁ । -- ମୋନା ଆଜି ଯିବ ବିବାହ ନକରି ଶାନ୍ତି ଖୋଜିବାକୁ । ଲିଲି, ମୋର ମାତୃହରା ସନ୍ତାନ । ଅଶୋକ ମୋ ଆଶ୍ରମର ଶ୍ରେଷ୍ଠ ପୃଷ୍ଠପୋଷକ । (ଚେକ୍ ବାହାର କରି) ଫାଦର

ଫ୍ରାନସିସ୍ - ମୋନା -- ? ମୋ ଆଶ୍ରମ-- ମୋ -- ଲିଲି -- ଅଶୋକ ? ଓଃ---- (ପାଗଳଙ୍କ ପରି ଚେକ୍‌ଟାକୁ ଚିରି ଦେଉ ଦେଉ )ତୁମେ -- ତୁମେ ପାଗଳ ଅବୋଧ , ତୁମେ ପାଗଳ --- ତୁମେ ପାଗଳ --

(ମଞ୍ଚ ଅନ୍ଧକାର)

( ମଞ୍ଚ ଆଲୋକିତ ହେବା ବେଳକୁ ଦେଖାଗଲା ପାର୍ଥଦାସଙ୍କର ପୂର୍ବ ବର୍ଣ୍ଣିତ ଘର । ଅଶୋକ ଫୋନ୍‌ରେ କଥାବାର୍ତ୍ତା କରୁଛି)

ଅଶୋକ - ଆଚ୍ଛା , ଆଚ୍ଛା ଠିକ୍ ଅଛି । ମୁଁ ସେଇ ମିଟିଂରେ ସେମାନଙ୍କୁ କିଛି ଡୋନେସନ ଦେଇଦେବି । ହେଲେ ସେ ମିଟିଂ ଅତି ବେଶିରେ ଅଧଘଣ୍ଟା ଭିତରେ ସାରିବାର ବନ୍ଦୋବସ୍ତ କରିବ । ---- ହଁ , ହଁ ମିଟିଂ ପୂର୍ବରୁ କେହି ଯେପରି ଟୋପାଏ ବି ନପିଅନ୍ତି । ତୁମ ସେ ଲୋକଗୁଡ଼ାକ ପିଇ ଦେଲେ ମାତାଲ ହୋଇଯାନ୍ତି । ମୁଁ ଗଲାବେଳକୁ ହୁଏତ ସେମାନେ ଫୁଲମାଳ ନିଜେ ପିନ୍ଧି ପେଣ୍ଡାଲ ଉପରେ ଢୁଳାଉ ଥିବେ । -----ଆରେ ସାତ କାହିଁକ ସତର ଝିଅ ତୁମେ ଯୋଗାଡ଼ କର । ଟଙ୍କା ମୁଁ ଦେବି । ହେଲେ ସେମାନଙ୍କ ହଜବ୍ୟାଣ୍ଡ ମଧ୍ୟରୁ କେହି ଯେପରି ଡ୍ୟାନସ୍ ଗ୍ରୁପ୍‌ରେ ନରହନ୍ତି । ---କେହି ବାହାହୋଇନାହାନ୍ତି ? ଗୁଡ୍ । ତଥାପି ସେଗୁଡ଼ାଙ୍କୁ ଭଲ ପାଉଥିବା ଟୋକାଗୁଡ଼ାଙ୍କୁ ମଧ୍ୟ ନଜରରେ ରଖିବାକୁ ପଡ଼ିବ । ------ ମୁଁ ଠିକ୍ ପାଞ୍ଚଟା ବେଳେ ପହଞ୍ଚିବି । ---- ହଁ, ହଁ ସେ ଝିଅ ମୋ ସାଙ୍ଗରେ ଯିବ । ଆଉ ଆମ ଦଳର ଅନ୍ୟମାନେ ହୁଏତ ଆଗରୁ ପହଞ୍ଚି ପାରନ୍ତି । --- ଆରେ ନା ,ନା ମୁଁ ତୁମ ମାଲ ଟୋପାଏ ବି ପିଇ ପାରିବିନି। ----- ଘର ବନ୍ଦୋବସ୍ତ -- ? ଠିକ ଅଛି , ଆମ ବେଡିଂ ଆମ ସାଙ୍ଗରେ ଯିବ । ---- ହଁ, ହଁ-- ଠିକ ଆଠଟା -- ନମସ୍କାର । (ଫୋନ ରଖିଦେଇ କିଛି କ୍ଷଣ ଚିନ୍ତା କରିବା ପରେ ପୁଣି ନିଜେ ଫୋନ ଡାଏଲ କରି)----ଲିଲି, ଅଶୋକ hear । ଗୁଡଲକ୍ , ଗେଟ୍ ରେଡି ବାଇ ସିକ୍ସ । ---ହଁ ଠିକ୍ ଛଅଟାରେ । ବାଟରେ କଫି ଆଉ ଚକୋଲେଟ ଖାଇନେବା । ---- ହ୍ୱାଟ୍ ? ଚେକ୍ ଟା ଚିରି ଦେଲେ ? କାହିଁକି ? --- ଦେଖ ଲିଲି , ଅନାଥ ଅଶ୍ରମ ଗୋଟାଏ ଅସହାୟ ଆଉ ବିକଳାଙ୍ଗ ପିଲାଗୁଡ଼ାଙ୍କର ସମାବେଶ । ସେମାନଙ୍କ ସାଙ୍ଗରେ ରହି ରହି ତୁମ ଡାଡି ବି ଦିନକୁ ଦିନ ଖାଲି ପିଲା ହୋଇପଡୁଛନ୍ତି ନୁହେଁ ନିଜକୁ ଅସହାୟ ଭାବୁଛନ୍ତି । ସେ ସବୁ ଠିକ ହୋଇଯିବ । ମୁଁ ଆଉ

ଗୋଟାଏ

ଚେକ୍ ତୁମ ନାମରେ କାଟି ରଖିଛି । ତୁମେ ନେଇଯିବ । ----- ଦେଖ ଲିଲି, ମୋନା - ମୋନା, ଆଉ ତୁମେ ଲିଲି । ଡୋଣ୍ଟ କମ୍ପାଏର । ବିନା କାରଣରେ ଆମର ଆଜି ଏ --- 1st engagement, I dont like to spoil it . ---- ନା ଲିଲି ନା ତୁମେ ଆଜି ଚାଲ । ନିଘଞ୍ଚ ଶାଳ ଆଉ ମହୁଲ ଅରଣ୍ୟ ଭିତରେ ଶାଳଗଛ ପରି ଅଯତ୍ନ ବର୍ଦ୍ଧିତ ସେ ଜଙ୍ଗଲୀ ଝିଅଗୁଡ଼ାଙ୍କର ସେ ମହୁଲୀ ନିଶା ଭିତରେ ଉପଭୋଗ କରି ଆସିବ ଗୋଟାଏ ନୂଆ ଜୀବନ । , ଯାହା ଉପରେ କୌଣସି ଆବରଣ ନାହିଁ । Don't be silly ----- ଭୁଲି ଯାଅନି ଏଇଟା ଗୋଟାଏ ଅର୍ଡିନାରି ଟେଲିଫୋନ । ମନେରଖ ଠିକ୍ ଛଅଟା ।

(ଫୋନ୍ ରଖିଦେବା .....ପ୍ରବେଶ କରିଛି ଅବୋଧ )

ଅବୋଧ - ଖାଲି ଅର୍ଡିନାରି ଟେଲିଫୋନ ନୁହେଁ - ଏଇଟା ବି ଗୋଟାଏ ସାଧାରଣ ଘର । ଡାଡ୍ ଆପଣଙ୍କ କଥା ଶୁଣିଛନ୍ତି ।

ଅଶୋକ - ଡାଡି ? ଡାଡି ମୋ କଥା ଶୁଣୁଥିଲେ ?

ଅବୋଧ - ହଁ, ବୁଝି ପାରିଛନ୍ତି କି ନା ଜାଣେନି ।

ଅଶୋକ - ଡାଡି କିପରି ଏତେ ତଳକୁ ----- ?

ଅବୋଧ - ନା ଭାଇ, ତୁମେ ଯେଉଁ ସ୍ପିଡରେ ଉପରକୁ ଉଠି ଚାଲିଛ ସବୁ ଡାଡି ତଳେ ରହିଯିବେ ।

ଅଶୋକ - What do you mean ?

ଅବୋଧ - ମୁଁ ବି ଏତେ ତଳେ ଅଛି ଯେ ମୋ' କଥା କେବେ ଆପଣଙ୍କୁ ଶୁଭିବନି କିମ୍ବା ଶୁଭିଲେ ମଧ୍ୟ ଆପଣ ବୁଝି ପାରିବେନି ।

ଅଶୋକ - ମୁଁ ବୁଝିପାରୁନି , ତୁମମାନଙ୍କର ଦୃଷ୍ଟିଭଙ୍ଗୀ ଦିନକୁ ଦିନ ଏତେ ଛୋଟ ହୋଇଯାଉଛି କାହିଁକି ?

ଅବୋଧ - ଏୟାର ଫ୍ଲାଇଟରେ ଆପଣ ଯେତେ ଯେତେ ଉପରକୁ ଉଠିଯିବେ ଏ ସହର ସେତେ ସେତେ ଛୋଟ ଦେଖାଯିବ ।

ଅଶୋକ - ଅବୋଧ, It is too much .

ଅବୋଧ - ସରି ବ୍ରଦର । ଆପଣମାନଙ୍କ ଭିତରେ ମୁଁ ଇଣ୍ଟରଫିଅର କରିବା ମୋଟେ ଉଚିତ ହୋଇନି । ତେବେ ନିଜ ସ୍ୱାର୍ଥ ପାଇଁ ମୁଁ ଗୋଟାଏ କଥା ବୁଝିନେବାକୁ ଚାହେଁ ।

ଅଶୋକ - କେଉଁ କଥା ?

ଅବୋଧ - ମୋନା ଯଦି ମୋ ସହ ଟୁରରେ ନଯାଏ --- ।

ଅଶୋକ - ତୁ ଗୋଟାଏ ବି ଟଙ୍କା ପାଇବୁନି । ବୁଝିବାରେ କଣ ଅଛି ?

ଅବୋଧ - କିନ୍ତୁ ଭାଇ ସେ ମୋଟେ ଯାଇ ବି ପାରିବନି ।

ଅଶୋକ - (ଅନୁଧ୍ୟାନ କରି ) କାହିଁକି କଣ ହେଲା ?

ଅବୋଧ - She has taken Nunship.

ଅଶୋକ - (ହସିଉଠି) Wonderful ମୋନା ହେବ ମାତାଜୀ । ତେବେ ତ ପରିଭ୍ରମଣ ବେଶି ଆବଶ୍ୟକ ।

ଅବୋଧ - ନା, ସେ ବର୍ତ୍ତମାନ Mother of mission । ମିଶନର ସମସ୍ତ ଦାୟିତ୍ୱ ଫାଦର ଫ୍ରାନସିସ୍ ତା ଉପରେ ଜୋର କରି ଲଦି ଦେଇ--

ଅଶୋକ - ସେ ନିଜେ ସୋଲେସ କ୍ୟାମ୍ପେନରେ ଶାନ୍ତି ଖୋଜିବାକୁ କେବଳ ଭାରତ ନୁହେଁ ସାରା ପୃଥିବୀ ବୁଲିବେ ?

ଅବୋଧ - ସେଥିପାଇଁ କିନ୍ତୁ ଆପଣଙ୍କୁ ଟଙ୍କା ଦେବାକୁ ପଡିବନି । ବର୍ଷକ ମଧ୍ୟରେ ଛଅଟା ଚେକ୍ ମାଧ୍ୟମରେ ନେଇଥିବା ତିରିଶ ହଜାର ଟଙ୍କା ଫେରାଇ ଦେବେ । ମୋନା ହୁଏତ ନିଜେ ଆସିବ ଆପଣଙ୍କୁ ସେ ଟଙ୍କା ଫେରାଇ ଦେବା ପାଇଁ ।

ଅଶୋକ - ଓଃ, ମଦର ମୋନା ନିଜେ ଆସିବେ ଅଶୋକ ଦାସକୁ ତା ଟଙ୍କାଫେରାଇ ଦେଇ -- କଣ ଫେରାଇ ନେବେ ସେ ? ଅଶୋକ ଦାସ କେବେ କିଛି ମର୍ଟଗେଜ୍ ରଖେନି । କିଣି ନିଏ । Never returnable

ଅବୋଧ - ମୋନା କିନ୍ତୁ ଆମ ହିପି ସୋସାଇଟିର ସବୁଠୁ Active ଝିଅ । ସରି, ତା

ନିଜ ଭାଷାରେ - Sex is a commodity and it can be bartered for, even a formal thanks ଯୌବନ ତାପାଇଁ ତତ୍ତ୍ୱ ଉକ୍ତି, କ୍ଷଣଭଙ୍ଗୁର । ମାଟି ମାଠିଆର ଭାଙ୍ଗି ଯାଇଥିବା ଅନେକ ଛୋଟ ବଡ଼ ଖପରା ଖଣ୍ଡ ପରି । ଆପଣ ଯେତେବେଳେ ସେଗୁଡ଼ାକ ତାଠୁ କିଣି ବସିଲେ , ସେ ଅମୂଲ୍ୟ ସମ୍ପଦ କହି ବାର୍ଗେନ କରି ବସିଲା । ଅଶୋକ ଦାସକୁ ଖାଣ୍ଟି ଜହୁରୀ କହି , ଚେକ୍ ଟାକି ତା ପାଇଁ ଯାହା କାଚ ତାକୁ କାଞ୍ଚନ ମୂଲ୍ୟରେ ବିକ୍ରି କରିଦେଇ ଗର୍ବ ଓ ସନ୍ତୋଷରେ ପାର୍ଟି ଦେଲା ଆମର ସେଇ ସୋସାଇଟି ହଲରେ । Realy , what an adventure ! What a smartness and how sweet---।

ଅଶୋକ - ଅବୋଧ ! Stop it

ଅବୋଧ - ଆଜି ସେ Nun . repented and turned from all her sins ଗୋଡି ମାଟିଠାରୁ ସୁଲଭ ତାର ନାରୀତ୍ୱ ଆପଣଙ୍କୁ ବହୁ ମୂଲ୍ୟରେ ବିକ୍ରୀ କରି ଠକି ନେଇଥିବା ଟଙ୍କା ଗୁଡାକୁ ଫେରେଇ ଦେଇ ସେ ହୁଏତ ଅନୁତାପ କରି ପ୍ରମାଣ କରିଦେବାକୁ ଚାହୁଁଛି ସେଇ ନୀତିବାଣୀ -- ମା କୁରୁ ଧନ ଜନ ଯୌବନ ଗର୍ବଂ, ସେତେବେଳେ ସେଇ ଯୌନ ବ୍ୟାଧିଗ୍ରସ୍ତା ମୋନାକୁ ଆପଣ ଧର୍ମପ୍ରାଣା ମଦର ମୋନା ମାନିବାକୁ ବାଧ ହେବେ ।

ଅଶୋକ - you ହିପି, Get out .

ଅବୋଧ - ୩୦ ହଜାର ଟଙ୍କା ଫେରି ଆସୁଥିବାର ଖବର ପାଇଁ କିନ୍ତୁ ମୋ କମିସନଟା ମୋତେ ଦେଇ ଦେବେ । ମୁଁ ସୋଲେସ କ୍ୟାମ୍ପର ଶୁଭ ଅନୁକୂଳ କରିବି ଆଜି ଠିକ୍ ଛଅଟା ବେଳେ । ଆପଣ ଯଦି ଚାହାନ୍ତି ଆଉ ମୋନା ନୁହେଁ; ଲିଲି ନାଁରେ ସେଇ ଦଶହଜାର ଟଙ୍କାର ଟ୍ରାଭଲରର୍ସ ଚେକ୍ କାଟି ଦେଇ ପାରନ୍ତି । କୌଣସି କଣ୍ଡିସନ ନରଖି । କାରଣ ମୁଁ ଲିଲି ସାଙ୍ଗରେ ଯିବାକୁ ତାକୁ କଥା ଦେଇ ସାରିଛି । ଆଜି, ଆଉ ଠିକ୍ ଛଅଟା ବେଳେ।

(ଦ୍ରୁତ ପ୍ରସ୍ଥାନ - ଅଶୋକ ; ଅବୋଧର ଯିବା ବାଟକୁ ଚାହିଁ ରହିଲେ ।

ଚିନ୍ତାରେ ତାଙ୍କ ମୁଖ ମଣ୍ଡଳ ବିବର୍ଣ୍ଣ ହୋଇଉଠିଲା । )

ଅଶୋକ - ମୋନା ମୋତେ କାଚକୁ କାଞ୍ଚନ କହି ଚିଟ୍ କଲା ? ସେ ଆଜି ମିଶନର ମଦର । ମୋ ଟଙ୍କା ବୁମେରାଂ ପରି ମୋ ନିକଟକୁ ଫେରି ଆସୁଛି । ଲିଲି ମୋ ସାଙ୍ଗରେ ଜଙ୍ଗଲକୁ ନଯାଇ ଅବୋଧ ସାଙ୍ଗରେ ଯିବ ଶାନ୍ତି ଖୋଜିବାକୁ ?

(ପକେଟରୁ ମଦ ବୋତଲ ବାହାର କରି )

କାମିନୀ - କାଞ୍ଚନ ଅଲ୍ ଚିଟ୍ । ଅଲ୍ ଫ୍ରଡ । ହେ ସୋମରସ ! ତୁମେ ତୁମେ ମୋତେ ପ୍ରାପ୍ତ ହୁଅ ।

(ଢକ ଢକ କରି ପିଇବା)

(ମଞ୍ଚ ଅନ୍ଧକାର । ଅଖ୍ୟାୟିକାର ସମାପ୍ତି)

***

(ନାଟକର ପୂର୍ବ ପରିବେଶ । ମଞ୍ଚର ସମ୍ମୁଖାଂଶରେ ଆଲୋକ ସୀମା ଆଲୋକିତ ହେବା ପରେ ଦେଖାଗଲା ୬ଷ୍ଠ ଚରିତ୍ର । ନିଜର ନିଷ୍କଳ ଅବସ୍ଥାରୁ ସଚଳ ହୋଇଉଠିଛି )

୬ଷ୍ଠ - ହିପ୍ପିଜିମ୍ ହିପ୍ ହିପ୍ ହୁରରେ ।
(ଚିଲମ ବାହାର କରି ଗଞ୍ଜେଇ ଟାଣିବା ପରେ ନିଶାରେ ଆତ୍ମ ବିଭୋର ହୋଇ ଉଠିଛି । ଏତିକି ବେଳେ ପ୍ରବେଶ କରିଛି ବୃଦ୍ଧ ଓ ରୁଗ୍ଣ ଅଭିନୟ ସହ ୧ମ ଚରିତ୍ର । ତାକୁ ଦେଖି ତାର ବାଟ ଓଗାଳିଛି ୬ଷ୍ଠ) -କଣ ପାଇଲ ? (ପ୍ରଥମ ଚରିତ୍ର ବୋକାଙ୍କ ପରି ଚାହିଁଛି -୬ଷ୍ଠ ଜୋରରେ ) - ଆମେ ଯେଉଁ ପଦ୍ମ ଖୋଜୁଥିଲେ.ପାଇଲ ?

୧ମ - (ମୁଣ୍ଡ ହଲାଇ ନାହିଁ କରୁ କରୁ ) ନା, ବାବା । ମୁଁ ଜରା ଗ୍ରସ୍ତ, ମୁଁ ରୁଗ୍ଣ ମୁଁ ଅସମର୍ଥ ।

୬ଷ୍ଠ - ତେବେ ?

୧ମ - ମୃତ୍ୟୁ --- ମୃତ୍ୟୁ -- ଆଃ ମୃତ୍ୟୁ । (ଧୀରେ ଧୀରେ ସ୍ୱାଭାବିକ ମୃତ୍ୟୁ ହୋଇଛି)

୬ଷ୍ଠ - (ଡରିଯାଇ ଘୁଞ୍ଚି ଯାଇଛି ଓ ବୋକାଙ୍କ ପରି ଠିଆ ହୋଇଛି )

୨ୟ - (ପ୍ରବେଶ କରି ୬ଷ୍ଠକୁ ଦେଖି ଇଙ୍ଗିତରେ ଡାକିଛି ଏବଂ ୬ଷ୍ଠ ପାଖକୁ ଆସିବା ପରେ )- ତୁମେ ଏଠି କଣ କରୁଛ ?

୬ଷ୍ଠ - (ଚିହ୍ନିପାରି) ଓଃ ତୁ--ତୁମେ ନା, ନା, ଆପଣ । ଆପଣ ନିଶ୍ଚୟ ପାଇଥିବେ ?

୨ୟ - କଣ ପାଇଥିବି ?

୬ଷ୍ଠ - କଣ, ସେଇ ଫୁଲ , ଆଲୁଅ , ବାସ୍ନା --- ?

୨ୟ - ମୁଁ କିଛି ବୁଝି ପାରୁନି ତୁମ କଥା । ଅବଶ୍ୟ ମୁଁ ପାଇଥିଲି ।

୬ଷ୍ଠ- କଣ ପାଇଥିଲେ ?

୨ୟ - କାମିନୀ, କାଞ୍ଚନ, ଆଉ ସୁରା । ସବୁ ପାଇଥିଲି ।

୬ଷ୍ଠ - କଣ କଲେ, କାହିଁ ସେସବୁ ?

୨ୟ - ସେ କାମିନୀ ଆଜି ମୋ ପାଇଁ ଯୌନବ୍ୟାଧି,ସେ କାଞ୍ଚନ ଆଜି ମୋର କଳଙ୍କ ଆଉ ସେ ସୁରା ? ସୁରା-- ଆଃ ଆଃ ସୁରା । ସୁରା---

(ହାର୍ଟ ଫେଲ କରି ମରିଛି)

୬ଷ୍ଠ - (ଅନୁଧାନ କରି ) ବିଚରା, ଭୋଗର କି ମୋହ । ହେଲେ ପାଇଲା କଣ ?

(ନିଶ୍ଚଳ ହୋଇଯିବା )

(ମଞ୍ଚର ଅନ୍ଧକାର ଅଂଶରେ ପ୍ରବେଶ କରିଛି ୩ୟ ଚରିତ୍ର । ସେଇ ଅନ୍ଧକାର ଭିତରେ ଗୀତଗାଇ ବୁଲୁ ବୁଲୁ ଚାଲିଯାଇଛି )

୩ୟ - ଜନ୍ମି ଯାତନାରେ ଯାତନା ଜୀବନେ ଥାଉ
ଜଡ଼ ଭୋଗେ ଜରା ପ୍ରାଣ ପାଏ କଷ୍ଟ
ମନ ତୁ ଅନ୍ଧାରେ ଧାଉଁ ----
ଜନ୍ମି ଯାତନାରେ -------
ପୀତ ତା କେଶର ରକ୍ତ ଶତଦଳ
ମହକେ ମୋହୁଛି ମହୀ,
ମୋର ମୋର କହି ଖୋଜି ହେଲେ ବାଇ
ଦୃଶ୍ୟରୁ ଅଦୃଶ୍ୟ ହୋଇ---- ।
କରମେ ସରିବୁ କାଞ୍ଚନେ ମରିବୁ
ଧରମେ ହେବୁ ବାଉଳି
ନର ନାରାୟଣ ସେବା କରି ଜାଣେ
ସବୁରି ହେବୁ ଭଗାରି ---- ।
ଜନମି ମରିବା ମରି ଜନମିବା
ଶେଷରେ ହୋଇବ ସାର
ସେ ଫୁଲ ବାସନା ଥିଲେରେ ବାସନା
ଏ ପିଣ୍ଡ ମଣିବୁ ଛାର ----- ।

୬ଷ୍ଠ - (ସଚଳ ହୋଇ) ସେଇ ମୃତ୍ୟୁ ? ହେଲେ କାହିଁକି ?

୪ର୍ଥ - (ପ୍ରବେଶ କରି) ମୁଁ ତାର ଉତ୍ତର ଦେବି ବତ୍ସ ।

୬ଷ୍ଠ - (ଦେଖିପାରି) ଓ! ତୁମେ ? ତୁମେ କଣ ସେଥିରୁ ମୁକ୍ତି ପାଇପାରିବ ?

୪ର୍ଥ - ଅସମ୍ଭବ । କେହି ପାଇ ନାହାନ୍ତି । ପାଇବେ ନାହିଁ ।

୬ଷ୍ଠ - ଆଚ୍ଛା, ତୁମେ ସେ ପଦ୍ମ ପାଇଲ ?

୪ର୍ଥ - ନା ବତ୍ସ ! ତା ପାଇବାର ବସ୍ତୁ ନୁହେଁ । ବିଶ୍ୱାସର କଥା । ବିଶ୍ୱାସେ ମିଳଇ ହରି ତର୍କେ ବହୁ ଦୂର ।

୬ଷ୍ଠ - ଧପ୍ପାବାଜ ! ସମସ୍ତଙ୍କୁ ଭ୍ରଷ୍ଟାଚାର କହି , ବିଧର୍ମୀ କହି , ବିଶ୍ୱାସ ନାଁରେ ଗୋଟାଏ ପ୍ରହେଳିକା ସୃଷ୍ଟି କରି ଚାଲିଛ । ମୋ ପ୍ରଶ୍ନର ସିଧା ଉତ୍ତର ଦିଅ । ତୁମେ ସେ ପଦ୍ମ ପାଇବ ?

୪ର୍ଥ - ନାଇଁ ଯେ - ତେବେ ---

୬ଷ୍ଠ- ହଁ କିମ୍ବା ନାହିଁ , କୁହ ।

୪ର୍ଥ - ନାହିଁ ।

୬ଷ୍ଠ - ଏମାନଙ୍କୁ ଦେଖ । ଏମାନେ କେହି ମୃତ୍ୟୁ କବଳରୁ ରକ୍ଷା ପାଇଲେ ନାହିଁ ତୁମେ ପାଇବ ? ତୁମେ କଣ ଜାଣ ?

୪ର୍ଥ - ଧ୍ୟାନ, ଭଜନ, କୀର୍ତ୍ତନ, ଜଣାଣ,ପୂଜା----

୬ଷ୍ଠ - ଚୁପ୍ କର , ସବୁ ଛଳନା ।

୪ର୍ଥ - ତେବେ ? (ଚିନ୍ତା କରି) ତୁମେ କଣ, ମୋ ପାଇଁ ଟିକେ କାମ କରିବ ?

୬ଷ୍ଠ - କି କାମ ?

୪ର୍ଥ - ମୁଁ ମୋର ଜ୍ଞାନ ବଳରେ ଜାଣି ପାରୁଛି, ଏ ଇହଲୀଳା ସମ୍ବରଣ କରିବାର ସମୟ ଆସନ୍ନ । ମୁଁ ବର୍ତ୍ତମାନ ମୋର ଶରୀର ତ୍ୟାଗ କରିବି । ତୁମେ ମୋ ଅନ୍ତେ ମୋ ପାଇଁ ଏକ ସମାଧି ଗଢ଼ି ଦେବ ?

୬ଷ୍ଠ - ସମାଧି ? କାହିଁକି ? ଏ ଭୂଇଁର ମାୟା ମୃତ୍ୟୁ ପରେ ବି ଛାଡ଼ି ଯିବାକୁ ଚାହୁଁନ ? (ହସି ଉଠିଛି)

୪ର୍ଥ - (୬ଷ୍ଠର ହସ ଭିତରେ ନିଜେ ପଦ୍ମାସନରେ ବସି ) ଓଁ ବ୍ରହ୍ମଣେ ନମଃ, ଓଁ

ବିଷ୍ଣବେ ନମଃ, ଓଁ ଶିବାୟ ନମଃ --- (ଆବୃତ୍ତି କରୁ କରୁ ଶରୀର ତ୍ୟାଗ କରିଛି ଓ ତାକୁ ଅନୁଧ୍ୟାନ କରି ୬ଷ୍ଠ ଆହୁରି ଜୋରରେ ହସି ଉଠିଛି )

୬ଷ୍ଠ - ତୋର ଶେଷ ଇଛା ସମାଧି ପ୍ରସ୍ତୁତି ପାଇଁ ମୋର ମଧ୍ୟ ଇଚ୍ଛା ଅଛି ବନ୍ଧୁ ! ହେଲେ ମୁଁ ଏକା ଏକା --- ? କେହି ଜଣେ ସାହାଯ୍ୟ ନକଲେ -- ?

୫ମ - (ପ୍ରବେଶ କରି ) ସାହାଯ୍ୟ ? କି ସାହାଯ୍ୟ ଆବଶ୍ୟକ ? ମୁଁ କରିବି ।

୬ଷ୍ଠ - (ତାକୁ ଅନାଇ ରହିଛି)

୫ମ - କୁହ, ସଂକୋଚ କରିବାର କଣ ଅଛି ? ମୁଁ ସାହାଯ୍ୟ ---

୬ଷ୍ଠ - କାହିଁକି ମୋତେ ସାହାଯ୍ୟ କରିବ ବନ୍ଧୁ ?

୫ମ - ପରର ଉପକାର କରିବାରେ ହିଁ ଜୀବନର ସାର୍ଥକତା ରହିଛି ।

୬ଷ୍ଠ - ଓଃ-ବୁଝିଲି । ମଞ୍ଜି ପୋତି ଗଛ ଉତ୍ତାରିବ । ନିଜ ଜୀବନର ପରମ ସାର୍ଥକତା ପାଇଁ ବ୍ୟର୍ଥ ଭରା ଜୀବ କେଇଟାକୁ ଚରମ କୃପା କରିବ ? ଋଣୀ ରଖିବ ? ଏହା କୃପା କରିବା ସମ୍ଭବ ନୁହେଁ ମୂର୍ଖ, ରୂପାନ୍ତରରେ କୃପା ଭିକ୍ଷା କରିବା । ପରୋପକାର ତ ଅନେକ କଲଣି, ହେଲେ କି ସାର୍ଥକତା ଆସିଛି ତୁମର ?

୫ମ - ନିଜର ସ୍ୱାର୍ଥ ପାଇଁ ଚିନ୍ତା କରି କିଛି କରିବା ସ୍ୱାର୍ଥପରତା ।

୬ଷ୍ଠ - ଅନ୍ୟ ପାଇଁ ଚିନ୍ତା କରିବାକୁ , ଅନ୍ୟକୁ ସାହାଯ୍ୟ କରିବାକୁ ତୁମକୁ ଅଧିକାରଦେଲା କିଏ ?

୫ମ - ଦୁଃଖୀର ସେବା କରିବା କଣ ଅନ୍ୟାୟ ?

୬ଷ୍ଠ - ଅର୍ଥ ମୁଁ ଜାଣେ, ତାର ଦୁଃଖ; ତାର ଯନ୍ତ୍ରଣାର ସମୟ ବଢ଼ାଇ ଦେବା ରୀତିମତ ନିଷ୍ଠୁରତା ।

୫ମ - (ହସି) ପାଗଳଙ୍କ ପରି ଏ କଣ କହୁଛ ? ମୋର ମନେ ପଡୁଛି ଦିନେ ତୁମେ ମଧ୍ୟ ଯନ୍ତ୍ରଣାରେ ଛଟପଟ ହୋଇ ---

୬ଷ୍ଠ - ଓ, ଦେଖୁଛି ସମସ୍ତ ସେବାର ସ୍ଥାନ-କାଳ ଆଉ ପାତ୍ରର ହିସାବ ଠିକ୍ ରଖିଛ। କି ଉପକାର କରିଛ ମୋର ?

୫ମ - ଯନ୍ତ୍ରଣାରୁ ମୁକ୍ତି ପରେ ଏ ଗର୍ବ, ଏ ଦାମ୍ଭିକତା ? କୃତଘ୍ନ ବ୍ୟତୀତ ତୁମେ ଆଉ କଣ ହୋଇପାର ?

୬ଷ୍ଠ - ସେବା କରିବାର ଗର୍ବକୁ ତୁମେ କୁହ , ଶାନ୍ତି । ଦାମ୍ଭିକତାକୁ ତୁମେ କୁହ ଶକ୍ତି ଆଉ ଅହଂକାରକୁ ତୁମେ କୁହ ତୃପ୍ତି । ଅନ୍ୟକୁ ନିଜ ନିକଟରେ କୃତଜ୍ଞ ରଖିବାର ଏ ଯେଉଁ ପରିକଳ୍ପିତ ଯୋଜନା, ମୁଁ କହିବି ରୀତିମତ ଗୋଟାଏ ଅତ୍ୟାଚାର ।

୫ମ - ଉପକାର କୁ ଅତ୍ୟାଚାର କହିବା, ବିଶେଷ କରି ତୁମେ ---

୬ଷ୍ଠ - ହଁ ମୁଁ, ମୁଁ ତାର ନିଜେ ଅନୁଭବୀ । ସେ ଦିନର ଯନ୍ତ୍ରଣାରୁ ମୋତେ ସେବା କରି ତୁମେ ବଞ୍ଚାଇ ରଖିଲ । ଆଜି ପର୍ଯ୍ୟନ୍ତ ମୁଁ ଯେଉଁ ଯନ୍ତ୍ରଣା ଭୋଗ କଲି ତା ପାଇଁ ଦାୟୀ କିଏ ? ଆଜି ବି ମୋର ମୃତ୍ୟୁ ହେବ । ସେ ଦିନ ହୋଇଥିଲେ କ୍ଷତି ହୋଇଥାନ୍ତା କଣ ? ବରଂ ମୁଁ ଏ ଯନ୍ତ୍ରଣା ଭୋଗ କରିନଥାନ୍ତି । କଣ ଅସ୍ୱୀକାର କରିବ ?

୫ମ - ଯେ କୃତଘ୍ନ, ତା ନିକଟରେ ମୁହୂର୍ତ୍ତେ ବି ରହିବା ଉଚିତ ନୁହେଁ ।

(୫ମ ଚାଲି ଯାଉଥିବା ବେଳେ ୬ଷ୍ଠ ତାକୁ ଧରି ନେଇ ଗଳା ଚିପି ଚିପି)

୬ଷ୍ଠ - ଏମିତି ଭାବରେ ଦୁର୍ବଳତା ଓ ନିଃସ୍ୱତାର ସୁଯୋଗ ନେଇ ସମସ୍ତଙ୍କୁ କୃତଜ୍ଞ ରଖି ଋଣୀ କରି ତୁ ତୋର ସେଇ ପରୋପକାରୟ ସର୍ଗୀୟର କଳ୍ପିତ ସର୍ଗକୁ ଯାଇପାରିବୁନି ମୂର୍ଖ । ଅନ୍ତତଃ ମୁଁ ହି ପ୍ରମାଣ କରିଦେବି --- ମୁଁ ତୋ ନିକଟରେ କୃତଜ୍ଞ ନୁହେଁ ।

(ପଞ୍ଚମର ମୃତ୍ୟୁ ହୋଇଛି ଓ ୬ଷ୍ଠ ହିଂସ୍ର ପରି କିଛି କ୍ଷଣ ତାକୁ ଅନାଇ ରହିବା ପରେ ପାଗଳ ପରି ହସି ଉଠି ଘୁରି ବୁଲୁ ବୁଲୁ )

କାହିଁ ସେ ବାସ୍ନା ? --- କାହିଁ ସେ ଆଲୁଅ ? କାହିଁ ସେ ରୂପ ? ---

ବାସ୍ନା-- ଆଲୁଅ---ରୂପ ?

(ପାଗଳଙ୍କ ପରି ତଳେ ଦୁମ୍ କରି ପଡ଼ିମରିବା )

(ମଞ୍ଚ ଅନ୍ଧକାର, ନାଟକର ପ୍ରାରମ୍ଭିକ ପରିବେଶ --ମଞ୍ଚର ମଧ୍ୟାଂଶରେ ଆଲୋକ ବର୍ତ୍ତିକା ଜଳି ଉଠିଛି । ମୂଳ ଚରିତ୍ର ତ୍ରୟ ଜଡ଼,ପ୍ରାଣ ଓ ମନ - ପ୍ରବେଶ କରିଛନ୍ତି । ସମସ୍ତେ କ୍ଲାନ୍ତ ଓ ବିଷର୍ଣ୍ଣ । ଅସ୍ପଷ୍ଟ ଯନ୍ତ୍ରଣାର ସ୍ୱର ସହ

ସେମାନେ ଘୁରି ବୁଲିବାକୁ ଆରମ୍ଭ କରିଛନ୍ତି । )

ଜଡ଼ - ମୁଁ କ୍ଳାନ୍ତ ।

ପ୍ରାଣ - ମୁଁ ଅକ୍ଷମ ।

ମନ - ମୁଁ ଉଦ୍‌ଭ୍ରାନ୍ତ ।

(ପ୍ରତ୍ୟେକ ପ୍ରତ୍ୟେକଙ୍କୁ କଟମଟ କରି ଚାହିଁଛନ୍ତି )

ପ୍ରାଣ - (ଜଡ଼କୁ)ତୁ ଟା ଜଡ଼ । ଗୋଟାଏ ନିର୍ଜୀବ ଶରୀର ।

ମନ - (ପ୍ରାଣକୁ) ତୁ ଟା ପଶୁ । ଗୋଟାଏ ଅକ୍ଷମ ପ୍ରାଣ ।

ଜଡ଼ - (ମନକୁ) ତୁ ଟା ପାଗଳ । ଗୋଟାଏ ଅମାନିଆ ମନ ।

ମନ - ନା ।

ପ୍ରାଣ - ନା ।

ଜଡ଼ - ନା ।

ପ୍ରତ୍ୟେକ ପ୍ରତ୍ୟେକଙ୍କୁ ନା ।

ପର୍ଯ୍ୟାୟ କ୍ରମେ--ହଁ - ହଁ - ହଁ ।

(ଠିକ୍ ଏତିକି ବେଳେ ଗୋଟାଏ ତୀର୍ଯ୍ୟକ ନୀଳାଲୋକ ପିଡ଼ିଛି ସେମାନଙ୍କ ଉପରେ ଓ ଏକ ସତନ୍ତ୍ର ସଂଗୀତ ପରେ ଅନ୍ତରାଳରୁ ଶୁଭିଛି--) -ତୁମେ ସବୁ ଖାଲି ସେଇ ପଦ୍ମ ଖୋଜିଲ । ହେଲେ ତୁମେମାନେ ସବୁ କିଏ ? କିଏ ତୁମେମାନେ ?

ମନ - (ପ୍ରାଣକୁ)ତୁ କିଏ ?

ପ୍ରାଣ- (ଜଡକୁ) ତୁ କିଏ ?

ଜଡ଼ - (ମନକୁ) ତୁ କିଏ ?

ମନ ଓ ପ୍ରାଣ - (ଜଡ଼କୁ)କୁହ ତୁ କିଏ ?

ଜଡ଼ - ମୁଁ ? ମୁଁ --! ମୁଁ କିଏ ? (ଆକାଶକୁ ଚାହିଁ ଚିତ୍କାର କରି ଉଠିଛି ) ମୁଁ କିଏ ?

ପ୍ରାଣ- (ସେହିପରି) ମୁଁ କିଏ ?

ମନ - (ସେହିପରି)ମୁଁ କିଏ ?

(ନୀଳାଲୋକ ଲିଭି ଯାଇଛି । ଆସିଛି ଗତି କରିବାର ସଂଗୀତ । ତିନି ଜଣ ପୁଣି ଘୁରିବାକୁ ଆରମ୍ଭ କରିଛନ୍ତି)

ଜଡ଼ - ସେ ଆଲୋକ ?

ପ୍ରାଣ - ସେ ଫୁଲ ?

ମନ - ସେ ବାସ୍ନା ?(ଟିକକ ପରେ)

ଜଡ଼ - ମୁଁ କ୍ଲାନ୍ତ ।

ପ୍ରାଣ - ମୁଁ ଅକ୍ଷମ ।

ମନ - ମୁଁ ଉଦ୍‌ଭ୍ରାନ୍ତ(ରହି ଯାଇ)

ଜଡ଼ - (ପ୍ରାଣକୁ)ମିଳିବ ? ସତରେ ମିଳିବ ?

ପ୍ରାଣ - (ଜଡ଼କୁ)ରାସ୍ତା ? ରାସ୍ତା କାହିଁ ?

ମନ - (ଉଭୟଙ୍କୁ)ଉପାୟ ? ଉପାୟ କଣ ?

(କୌଣସି ଉତ୍ତର ନପାଇ ବିରକ୍ତିରେ ଜଡ଼କୁ ) ଏ ବିଫଳତାର କାରଣ ତୁ । ତୁ ଜଡ଼ । ତୁ ଟା ଅଳସୁଆ —-ଅବିଶ୍ୱାସୀ, ଅଜ୍ଞାନ ।

ଜଡ଼ - ଆଉ ଏଇଟା, ଏଇଟା ପଶୁ । ଏଇଟା ଅହଂକାରୀ-ଲୋଭୀ-- ସ୍ୱାର୍ଥପର ।

ପ୍ରାଣ - (ମନକୁ )ତୁ, ତୁ ଚଞ୍ଚଳ । ତୁ ଟା ଅଭ୍ୟାସର ଦାସ । ଭ୍ରାନ୍ତ ଧାରଣାର ବଶ।

ମନ - ନା ।

ଉଭୟେ - ନା ।

ମନ - ହଁ, ମୁଁ ମାନୁଛି ।

ପ୍ରାଣ - ମୁଁ ବି ମାନୁଛି ।

ଜଡ଼ - ମୁଁ କଣ କେବେ ମନା କରିଛି ।

(ପୂର୍ବୋକ୍ତ ନୀଳ ଆଲୋକ ଓ ସଂଗୀତ ଶୁଭିଛି )

A few shall she what non yet understands,
God shall grow while the wise men
talk and sleep,

For man shall not know the coming
till its hour
And belief shall be not till the work is done .
ଚରୈବେତି---ଚରୈବେତି---ଚରୈବେତି ।
(ଆଲୋକ ଓ ସଂଗୀତ ବନ୍ଦ --ପ୍ରତ୍ୟେକ ପ୍ରତ୍ୟେକଙ୍କୁ ପ୍ରଶ୍ନ କରିଛନ୍ତି ।-ଚରୈବେତି ? କ୍ଷଣକ ପରେ ଏକ ସ୍ୱରରେ ସମସ୍ତେ କହି ଉଠିଛନ୍ତି--ଚରୈବେତି ଏବଂ ଏ ପର୍ଯ୍ୟନ୍ତ ବୁଲୁଥିବା ଦିଗ ପରିବର୍ତ୍ତନ କରି ଘୁରିବାକୁ ଆରମ୍ଭ କରିଛନ୍ତି । କିଛିକ୍ଷଣ ଘୁରିବା ପରେ ରହିଯାଇ)

ଜଡ଼ - ମୁଁ ସଂକଳ୍ପ କରୁଛି, ମୁଁ କମନୀୟ ହେବି । ମୁଁ ଉନ୍ମୁକ୍ତ ହେବି ।

ପ୍ରାଣ - ମୁଁ ସଂକଳ୍ପ କରୁଛି , ମୁଁ ଗ୍ରହଣଶୀଳ ହେବି । ମୁଁ ସମ୍ମତି ଦେବି ।

ମନ - ମୁଁ ମଧ୍ୟ ସଂକଳ୍ପ କରୁଛି , ମୁଁ ଦୃଢ଼ ହେବି । ମୁଁ ନିରବ ହେବି ।

ସମସ୍ତେ - ଆମମାନଙ୍କର ଏ ସଂକଳ୍ପ ହେବ---

ଜଡ଼ - ସଦା ଜାଗ୍ରତ ।

ପ୍ରାଣ - ଅବିରାମ ।

ମନ - ଅବିଚ୍ଛିନ୍ନ ।

(ଏତିକି ବେଳେ ଦେଖା ଦେଇଛି ସେ ଫୁଲର କେଶର , ପୀତାଲୋକ )

ଜଡ଼ - (ଆନନ୍ଦରେ) ଏଇ, ଏଇତ ସେ ଆଲୋକ । (ଅନାଇ ରହିବା ପରେ )

ପ୍ରାଣ - ହେଲେ ତାର ସେ ରୂପ ? ସେ ଫୁଲ କାହିଁ ?

ମନ - ତାର ବାସ୍ନା କାହିଁ ? (କ୍ଷଣକ ପରେ)

ପ୍ରାଣ - ମୁଁ ପ୍ରତ୍ୟାଖ୍ୟାନ କରୁଛି । ମୋର ସମସ୍ତ କାମନା, ଦାବି, କ୍ଷୁଧା । ଉତ୍ତେଜନା--ଆବେଗ । ସ୍ୱାର୍ଥପରତା , ଅହଂକାର - ଗର୍ବ । କାମ - ଲୋଭ- ଈର୍ଷା ଏବଂ ଆସୂୟା । ଆଉ, ଆଉ ସତ୍ୟ ପ୍ରତି ମୋର ବିରୁଦ୍ଧାଚାର । ହେ ଦିବ୍ୟଶକ୍ତି । ହେ ଆନନ୍ଦମୟ । ମୋ ସାମର୍ଥ୍ୟ ତୁମକୁ ଧାରଣ କରିବାକୁ ସମର୍ଥ ହେଉ । (କଳା ଓ ଲାଲ ରଙ୍ଗର ବେଲୁ ପକାଇଦେବା । )

ଜଡ଼ - ମୁଁ ପ୍ରତ୍ୟାଖ୍ୟାନ କରୁଛି ମୋର ସମସ୍ତ ପ୍ରକୃତିର ମୂଢ଼ତା ,ସଂଶୟ, ଅବିଶ୍ୱାସ, ଅଜ୍ଞାନ, ଦୁରାଗ୍ରହ, ଆଳସ୍ୟ, ତାମସିକତା ଆଉ ପରିବର୍ତ୍ତନ ବିମୁଖତା । ହେ ଦିବ୍ୟଜ୍ୟୋତି! ତୁମେ ପ୍ରାପ୍ତ ହୁଅ , ପ୍ରତିଷ୍ଠିତ ହୁଅ । (କଳାରଙ୍ଗର ବେଲ୍ଟ ପକାଇ ଦେବା )

ମନ - ମୁଁ ପ୍ରତ୍ୟାଖ୍ୟାନ କରୁଛି, ମୋର ଯେତେ ଯେତେ ବଦ୍ଧ ଆଉ ଭ୍ରାନ୍ତ ଧାରଣା। ମୋର ସମସ୍ତ ଅଭିମତ ଓ ଅଭିରୁଚି । ଅଭ୍ୟାସ ଓ ପରିକଳ୍ପନା । ହେ ଦିବ୍ୟ ଜ୍ଞାନ, ମୋର ଏଇ ଉନ୍ମୁକ୍ତ ଆଉ ନିସ୍ତରଙ୍ଗ କ୍ଷେତ୍ରରେ ପ୍ରକାଶିତ ହୁଅ । (କଳା ଲାଲ ଧଳା ରଙ୍ଗର ବେଲ୍ଟ ଖୋଲି ପକାଇଚି ) (ଫୁଲର ସର୍ବାଙ୍ଗ ଦୃଶ୍ୟ ହୋଇଛି)

ପ୍ରାଣ - ଏଇତ , ଏଇତ ସେଇ ପଦ୍ମ ଫୁଲ ।

ସମସ୍ତେ - କି ସୁନ୍ଦର ।

(ବିଭୋର ହୋଇ ପରସ୍ପରକୁ ଚାହିଁ ରହିବା )

ମନ - (ଆଘ୍ରାଣ କରି) ହେଲେ ସେ ବାସ୍ନା ? ତାର ସେ ବାସ୍ନା କାହିଁ ?

(ସମସ୍ତେ ସେ ଫୁଲକୁ ଚାହିଁ ରହିଲେ )

ମନ - ଆସ ସମସ୍ତେ ପ୍ରଣିପାତ କର । ସମର୍ପଣ କର ।

(ସମସ୍ତେ ପ୍ରଣାମ କଲେ )

ସମସ୍ତେ - ଆମେ ସମସ୍ତେ ସମର୍ପଣ କରୁଛୁ -----

ମନ - ଆମ ଭିତରେ ଯାହା, ପ୍ରବଞ୍ଚନାର ଅନ୍ତରାଳରେ ନିଜକୁ ଲୁଚାଇ ରଖିଛି ।

ପ୍ରାଣ - ଆମ ଭିତରେ ଯାହା ସଂଶୟପୂର୍ଣ୍ଣ ।

ଜଡ - ଆମ ଭିତରେ ଯାହା କୁଣ୍ଠାଗ୍ରସ୍ତ ।

ମନ - ଆମେ ନିଜେ ଯାହା ଏବଂ ଆମମାନଙ୍କର ନିଜ ଭିତରେ ଯାହା ଅଛି ।

ପ୍ରାଣ - ଆମମାନଙ୍କ ଚେତନାର ସମସ୍ତ ସ୍ତର ।

ଜଡ଼ - ସମସ୍ତ ବୃତ୍ତି ।

(ମହକ ପାଇ ସମସ୍ତେ ବିଭୋର ହୋଇଉଠିଛନ୍ତି )

ମନ - ଏଇତ ସେଇ ବାସ୍ନା ।

ସମସ୍ତେ - ଓଃ କି ମହକ, ସେ ବାସ୍ନା ---

ମନ - ଓଁ ଆନନ୍ଦମୟୀ---

ପ୍ରାଣ - ଓଁ ଚୈତନ୍ୟମୟୀ----

ଜଡ଼ - ଓଁ ସତ୍ୟମୟୀ ---

ସମସ୍ତେ - ପରମେ । (ପ୍ରଣାମ କରି)

ଓଁ ଆନନ୍ଦମୟୀ, ଚୈତନ୍ୟମୟୀ. ସତ୍ୟମୟୀ ପରମେ ।

(ଠିକ୍ ଏହି ସମୟରେ ମରି ପଡିଥିବା ୫ଟି ଚରିତ୍ର ପୁନର୍ଜୀବିତ ହୋଇ ଆଣ୍ଠୁମାଡ଼ି ବସି ଆହ୍ୱାନ କରିଛନ୍ତି)

ଓଁ ଆନନ୍ଦମୟୀ, ଚୈତନ୍ୟମୟୀ ,ସତ୍ୟମୟୀ ପରମେ ।

(ଫୁଲଟି ଅବତରଣ କରିବା ପରି ମନେ ହେଉଥିବା ବେଳେ ଧୀରେ ଧୀରେ ପରଦା ନଇଁ ଆସିଛି ମଞ୍ଚ ଉପରେ )

***




# ଇତିବାର୍ତ୍ତା

ନାରାୟଣ ପଟ୍ଟନାୟକ

**ପ୍ରବୃତ୍ତି ପାଞ୍ଚାଳୀ**

ଜିଜୀବିଷା
ଜିଗିଷା
ଜିଜ୍ଞାସା
ବ୍ୟୁଥାନ୍
ଜ୍ୟୋତି

**ପ୍ରତିଭୂ**

ଭୀମବାବୁ
ସମ୍ରାଟ୍
ଦୀନବନ୍ଧୁ
ଅଭିଳାଷ
ଜ୍ୟୋତି

## ପ୍ରଚ୍ଛଦ ବିଶ୍ଳେଷଣ

# ଇତିବାର୍ତ୍ତା

## ପ୍ରବୃତ୍ତିର ଉତ୍ତରଣ

| ରଙ୍ଗ | ପ୍ରବୃତ୍ତି |
|---|---|
| ଉଜ୍ଜ୍ୱଳ ଧଳା : | ଜ୍ୟୋତି |
| ହଳଦିଆ : | ବ୍ୟୁତ୍ଥାନ |
| ନୀଳ : | ଜିଜ୍ଞାସା |
| ଲାଲ୍ : | ଜିଗୀଷା |
| ଧୂସର : | ଜିଜୀବିଷା |

# ଇତିବାର୍ତ୍ତା

## ପ୍ରାକ୍ କଥନ

ଏ ନାଟକ ; ଋଷିବାକ୍ୟ - 'ପ୍ରବୃତ୍ତି ପାଞ୍ଚାଳୀ'ର ମଞ୍ଚରୂପ । ପ୍ରବୃତ୍ତିମାନଙ୍କର ପ୍ରତିନିଧିମାନେ ହିଁ ଏହାର ଚରିତ୍ର । ଏ ନାଟକ କେଉଁ ପର୍ଯ୍ୟାୟର - ସାମାଜିକ, ପୌରାଣିକ କିମ୍ବା ଉଭଟ ଏବେ ବି ଅମୀମାଂସିତ । ସେ ଦୃଷ୍ଟିରୁ ଏହାର ମଞ୍ଚାଭିନୟ ସମ୍ପୂର୍ଣ୍ଣ ତ୍ରୁଟି ରହିତ ବୋଲି କହିବା ବାହୁଲ୍ୟ ମାତ୍ର ।

ଉପସ୍ଥାପନା ଦୃଷ୍ଟିରୁ ଦୁଇଟି ଶୈଳୀ, ସାଙ୍କେତିକ ଓ ରୂପାତ୍ମକ । ମଞ୍ଚସଜ୍ଜା ସମ୍ପୂର୍ଣ୍ଣ ଭିନ୍ନ ଓ ସହଜ ଭାବରେ ପରିଚାଳନା କରାଯିବ । ସାଂକେତିକ ଭାବରେ ସୂତ୍ରଧର ପୋଷାକ - କଳା, ୧ମର ଧୂସର, ୨ୟ ଲାଲ, ୩ୟ, ନୀଳ, ୪ର୍ଥର ହଳଦିଆ ଓ ୫ମ ଜ୍ୟୋତିର ଧଳା ହେବ । ରଶି ଚାରୋଟି ମଧ୍ୟ ପ୍ରତିନିଧି ମାନଙ୍କ ରଙ୍ଗର ହେବ । ରୂପାତ୍ମକ ଅଂଶ ସାମାଜିକ ନାଟକ ଭାବରେ ଉପସ୍ଥାପନ କରାଯିବ । ଆଲୋକ ଓ ସଂଗୀତ ଅଭିନୟ କରୁଥିବା ଚରିତ୍ର ସହ ସୁସାମଞ୍ଜସ ହେବା ପାଇଁ ସତର୍କତା ଅବଲମ୍ବନ କରିବା ବିଧେୟ ।

ସର୍ବୋପରି ସ୍ମାରକଙ୍କ ବ୍ୟବହାର ମୋଟେ ନରଖିବା ପାଇଁ ଚେଷ୍ଟା କରିବା ଉଚିତ ।

ନାଟ୍ୟକାର

# ଆରମ୍ଭ

## (ପ୍ରସ୍ତୁତି)

(ମଞ୍ଚରୁ ପରଦା ଅପସରି ଯାଇଛି । ଆଲୋକ ଜଳିନାହିଁ । ଅନ୍ତରାଳରୁ ଶୁଭୁଛି)ସମଗ୍ର ଜୀବ ଜଗତକୁ ସ୍ରଷ୍ଟାଙ୍କର ଯେଉଁ ବାର୍ତ୍ତା, ଚେତନା ସୀମାବଦ୍ଧ କଲା ତାହା ହିଁ ହେଉଛି ଶେଷବାର୍ତ୍ତା - ଇତିବାର୍ତ୍ତା । ଯାହାର ନାମ ଅଛି, ରୂପ ଅଛି, ସମ୍ପର୍କ ଅଛି, ଜନ୍ମ ଅଛି, ବୟସ ଅଛି ଏବଂ ମୃତ୍ୟୁ ଅଛି - ସେ ହିଁ ଜୀବ । ଏ ଜୀବ ଜଗତର ଉତ୍ପତ୍ତି, ଗତି ଓ ପରିଣତି ମାତ୍ର ପାଞ୍ଚଟି ମୌଳିକ ପ୍ରବୃତ୍ତିରେ ସୀମିତ । ଏ ପ୍ରବୃତ୍ତି ପାଞ୍ଚାଳୀ ହେଲେ - ଜିଜୀବିଷା, ଜିଗିଷା, ଜିଜ୍ଞାସା, ବ୍ୟୁହ୍ଥାନ ଏବଂ ଜ୍ୟୋତି । ସମସ୍ତ ଜୀବ ଜଗତ ଏ ପାଞ୍ଚ ପ୍ରବୃତ୍ତି ଭିତରେ ଆବଦ୍ଧ । ଏ ପଞ୍ଚ ପ୍ରବୃତ୍ତି, କ୍ଷୁଦ୍ରାଦପି ଗରିୟସୀ ସମସ୍ତ ଜୀବ ମଧ୍ୟରେ ପ୍ରବୃଦ୍ଧ । ଜୀବ ବ୍ୟତିରେକ ଏ ପ୍ରବୃତ୍ତି ପାଞ୍ଚାଳୀର ସ୍ଥିତି ଅନନୁଭୂତ ଏବଂ ଏ ପଞ୍ଚ ପ୍ରବୃତ୍ତିର ସୀମା ବାହରେ ଏ ଜୀବ ଅସମ୍ଭାବ୍ୟ । ଯେଉଁ ଜୀବ ଏ ପଞ୍ଚ ପ୍ରବୃତ୍ତିରେ ଉଦ୍‌ଜୀବିତ ହେଲା , ଯେଉଁ ଜୀବ ଏ ପ୍ରବୃତ୍ତି ପାଞ୍ଚାଳୀକୁ ଉନ୍ମୋଚିତ କଲା , ସେଇ ଜୀବର ପ୍ରତିନିଧି -- ଏଇ ଆପଣମାନଙ୍କ ସମ୍ମୁଖରେ ।

(ମଞ୍ଚର କେନ୍ଦ୍ର ଆଲୋକ ଆବର୍ତ୍ତ ଆଲୋକିତ ହୋଇଛି । ଦେଖା ଦେଇଛି ସ୍ଥୁଳ ଚରିତ୍ର । ଆଣ୍ଠୁ ଭିତରେ ମୁଣ୍ଡ ଲୁଚାଇ ନିଶ୍ଚଳ ଭାବରେ ବସିଛି । ଅନ୍ତରାଳରେ ଅତ୍ୟନ୍ତ କଟୁ ଶବ୍ଦରେ ବାଜି ଉଠିଛି ଡ୍ରମବାଜା ଓ ଉଚ୍ଚ ସ୍ୱରରେ ଚିତ୍କାର କରି ପ୍ରବେଶ କରିଛି ପ୍ରଥମ ଚରିତ୍ର , ଜିଜୀବିଷାର ପ୍ରତିନିଧି )

୧ମ - କ୍ଷୁଧା - କ୍ଷୁଧା - ଖାଇବି, ଭୋକ - ଭୋକ -, ଖାଇବି.... (ଆଲୋକ ଆବର୍ତ୍ତ ମଧ୍ୟରେ ପ୍ରବେଶ କରି ସ୍ଥୁଳ ନିକଟରେ ପାଟି କରିଛି)

ସ୍ଥୁଳ - (ଧୀରେ ଧୀରେ ନିଦରୁ ଉଠିବା ପରି ଛିଡ଼ା ହୋଇଛି ଓ ପ୍ରଥମକୁ ବୋକାଙ୍କ ପରି କଟମଟ କରି ଅନାଇ ତାକୁ ଜାବୋଡ଼ି ଧରିବାକୁ ଚେଷ୍ଟା କରିଛି)

୧ମ - (ସ୍ଥୂଳ କବଳରୁ ନିଜକୁ ମୁକ୍ତ ରଖି ) ଭୋକ, ଖାଇବି - ବଞ୍ଚିବି । ଖାଇବି- ବଞ୍ଚିବି । ମୁଁ ଖାଇବି - ମୁଁ ବଞ୍ଚିବି ।

ସ୍ଥୂଳ - (ପ୍ରଥମକୁ ଅଣ୍ଟାରୁ ଧରିନେଇ ପୁଣି ଶୋଇ ପଡ଼ିବାକୁ ଚେଷ୍ଟା କରୁଥିବା ବେଳେ ୧ମ ନିଜ ବେକରୁ ପାଟିର ଚିତ୍ର ବାହାର କରି ସ୍ଥୂଳ ବେକରେ ପକାଇ ଦେଇଛି । )

୧ମ - ମୁଁ ଖାଇବି ... ଆମେ ଖାଇବା ... ଖାଇବା ... ବଞ୍ଚିବା .... ଖାଇବା ... ବଞ୍ଚିବା ......

ସ୍ଥୂଳ - (କ୍ଷଣେ ସ୍ତବ୍ଧ ହୋଇ ୧ମକୁ ଛାଡ଼ି ଦେଇଛି ଓ ସେ ପାଟିରେ ଚିତ୍ରକୁ ଜାବୋଡ଼ି ଧରି ଚିତ୍କାର କରିଛି) ମୁଁ ଖାଇବି .... ଖାଇବି ...ଖାଇବି..ଭୋକ...ଭୋକ...

୧ମ- (ମୁକ୍ତ ହୋଇ ଆନନ୍ଦରେ ) ହଁ... ହଁ ଖାଇବା... ବଞ୍ଚିବା ...ଖାଇବା ... ବଞ୍ଚିବା .. ବଞ୍ଚିବା

ଦୁହେଁ- .(ନାଚି ଘୁରି ବୁଲୁ ବୁଲୁ) ଖାଇବା... ବଞ୍ଚିବା . ...ଖାଇବା .ବଞ୍ଚିବା ।

୧ମ- (ନିଜ କାନ୍ଧରେ ଝୁଲୁଥିବା ରଶିର ଗୋଟିଏ ପାଖକୁ ସ୍ଥୂଳ ବେକରେ ବାନ୍ଧି ସେହିପରି ପାଟି କରୁ କରୁ ଆଲୋକ ଆବର୍ତ୍ତ ମଧ୍ୟରୁ ଧୀରେ ଧୀରେ ବାହାରି ଆସି ତା ପାଇଁ ଉଦ୍ଦିଷ୍ଟ ଆସନ ଉପରେ ଛିଡ଼ା ହୋଇଛି । ସେ ଆସନ ପାଇଁ ସ୍ୱତନ୍ତ୍ର ଆଲୋକ ଜଳି ଉଠିଛି । ସେ ରଶିଟିର ଅପର ପାର୍ଶ୍ୱକୁ ଧରି, ହଲାଇ ହଲାଇ ସ୍ଥୂଳକୁ ନଚାଇବାର ଅଭିନୟ କରୁଥାଏ ଓ ମଝିରେ ମଝିରେ ତୃପ୍ତିରେ ଓ ଗର୍ବରେ ହସି ଉଠୁଥାଏ । )

ସ୍ଥୂଳ- (କିଛି ଜାଣି ନପାରି ପାଟି କରୁ କରୁ ଖାଇବାର, ଖାଇବା ପରେ ତୃପ୍ତିର, ତାପରେ ନିଜ ଶାରୀରିକ ବିକାଶରେ ଆନନ୍ଦ, ପୁଣି ଖାଇବା, ବହୁତ ଖାଇ ଅସ୍ୱସ୍ତି ଅନୁଭବ କରିବା, ବିଶ୍ରାମ ନେବା, ପୁଣି ଖାଇବା, ପୁଣି ତୃପ୍ତିର ଧାରାବାହିକ ଅଭିନୟ କରିଚାଲିଥାଏ । ପ୍ରଥମ ଚରିତ୍ର ରଶି ସାହାଯ୍ୟରେ ଦେଉଥିବା ନିର୍ଦ୍ଦେଶ ମାନି ମଝିରେ ମଝିରେ କହୁଥାଏ । )-ମୁଁ ଖାଇବି...

ମୁଁ ବଞ୍ଚିବି ... ମୁଁ ଖାଉଛି...ମୁଁ ଆହୁରି ଖାଇବି... ମୁଁ ଆହୁରି ବଞ୍ଚିବି ।
(ସ୍ଥୁଳ ବିଶ୍ରାମ କରୁଥିବା ଓ ୧ମ କ୍ଳାନ୍ତ ହୋଇପଡିଥିବା ବେଳେ ଅନ୍ତରାଳରୁ ଶୁଭୁଛି ପ୍ରବଳ ତୋଫାନର ଶବ୍ଦ ଓ ହାତରେ ଧରିଥିବା ବଡ଼ ଚାବୁକ ପ୍ରହାର ଶବ୍ଦ ସହ ପ୍ରବେଶ କରିଛି ୨ୟ ଚରିତ୍ର ଈଶତ୍ୱର ପ୍ରତିନିଧି । ସ୍ଥୁଳକୁ ଦେଖି ପାରି ଚାବୁକ ପ୍ରହାର କରି ଚାଲିଛି ତାକୁ ।)

ସ୍ଥୁଳ- (ହଠାତ୍ ଉଠିପଡି)-ଭୋକ- ଭୋକ-ମୁଁ ଖାଇବି.....(ଖାଇବାର ଅଭିନୟ କରିବା ଆରମ୍ଭ କରୁ କରୁ )

୨ୟ- (ପୁଣି ଚାବୁକ ମାରୁ ମାରୁ )ପେଟୁ , ଖାଇବୁ ? ଖାଲି ଖାଇବୁ ।

ସ୍ଥୁଳ- (ଚାବୁକ ଧରିବାକୁ ଚେଷ୍ଟା କରୁ କରୁ )ମୁଁ ଖାଇବି... ମୁଁ ବଞ୍ଚିବି ...ବଞ୍ଚିବି..

୨ୟ- (ଚାବୁକ ଟାଣି ନେଇ ପୁଣି ମାରିବାକୁ ଯାଇ) ବଞ୍ଚିବୁ ? ପେଟୁ, ମୂର୍ଖ, ତୁ ବଞ୍ଚିବୁ ?- ମରିବୁ । ତୁ ମରିବୁ (ହସି ଉଠିଛି)

ସ୍ଥୁଳ- (ଯନ୍ତ୍ରଣା ଜର୍ଜରିତ ହୋଇ ନିଜକୁ ପ୍ରକୃତିସ୍ଥ କରିବା ଓ ଧୀରେ ଧୀରେ କ୍ରୋଧାନ୍ୱିତ ହୋଇଉଠି ୨ୟକୁ ଜାବୋଡ଼ି ଧରିବା । ଦ୍ୱିତୀୟ ସହଜରେ ମୁକ୍ତ ହୋଇ ପୁଣି ଚାବୁକ ପ୍ରହାର କଲାବେଳେ ଚାବୁକକୁ ଧରି ନେଇ) କିଏ ? କିଏ ତୁ ?

୨ୟ- ମୁଁ ? ମୁଁ ତୋର ପ୍ରଭୁ । ତୋର ମାଲିକ । ତୋର ଶାସକ ।

ସ୍ଥୁଳ- ମାଲିକ ? ଶାସକ ? ଏଠି କାହିଁକି ?

୨ୟ- ଶାସନ କରିବାକୁ । ପ୍ରଭୁତ୍ୱର ପ୍ରତିଷ୍ଠା କରିବାକୁ । ସମଗ୍ର ଜଗତକୁ ନିଜ ଅକ୍ତିଆରରେ ରଖିବାକୁ । ମୁଁ ଚାହେଁ ପ୍ରଭୁତ୍ୱ, ମୁଁ ଚାହେଁ ଈଶତ୍ୱ....

ସ୍ଥୁଳ- ପ୍ରଭୁତ୍ୱ ... ? ଈଶତ୍ୱ.. ?

୨ୟ- ହଁ, ଏଇ ଚାବୁକ ବଳରେ ମୁଁ ସମସ୍ତଙ୍କୁ ଶାସନ କରିବି । ମୁଁ ହେବି ପ୍ରଭୁ, ମୁଁ ହେବି ଈଶ ।

ସ୍ଥୁଳ- (କ୍ଷଣେ ଚିନ୍ତାମଗ୍ନ ହୋଇ ହଠାତ୍ ଚାବୁକଟା ଉଠାଇ ନେଇଛି ଓ ଠିକ୍ ଭାବରେ ଧରି )-ଭୋକ, ଖାଇବି ଆଉ ବଞ୍ଚିବି । ଚାବୁକ... ପ୍ରଭୁତ୍ୱ...

ଈଶତ୍ୱ....ମୁଁ ଶାସନ କରିବି । (ହସି ଉଠି ଚାବୁକ ମାରି ନାଚି ଉଠିଛି --୨ୟ ହସି ଉଠିଛି ଓ ରଶି ବାହାର କରି ସ୍ଥୁଳ ଅଣ୍ଟାରେ ବାନ୍ଧି ଧୀରେ ଧୀରେ ଚାଲି ଯାଇଛି ତା ପାଇଁ ଉଦ୍ଦିଷ୍ଟ ଆସନ ଉପରକୁ । ସେଠାରେ ଆଲୋକ ଜଳି ଉଠିଛି ।)

ସ୍ଥୁଳ- (୧ମ ରଶି ହଲାଇଲେ)-ଖାଇବି, ଜୀଇଁବି (କହି ଅଭିନୟ କରେ ) (୨ୟ- ରଶି ହଲାଇଲେ) - ପ୍ରଭୁତ୍ୱ...ଈଶତ୍ୱ...(କହି ନାଚି ଉଠିଛି, ବେଳେ ବେଳେ ପାଟି କରିଛି । ମୁଁ ଜୀଇଁବି , ପ୍ରଭୁ ପରି ଜୀଇଁବି । ଶାସନ କରି ଜୀଇଁବି । ଶାସନ କରି ଜୀଇଁବି । ମୁଁ ଜୀବ ...ମୁଁ ପ୍ରଭୁ ...ମୁଁ ଶାସକ...।

(ଅନ୍ତରାଳରୁ ବୀଣାର ସ୍ୱର ଶୁଭିଛି । ପ୍ରବେଶ କରିଛି ୩ୟ ଚରିତ୍ର ଜିଜ୍ଞାସାର ପ୍ରତିନିଧି । ହାତରେ ଏକ ବହି ଧରି ପଢୁ ପଢୁ ଆସିଛି ସେ । କେନ୍ଦ୍ର ଆବର୍ତ୍ତ ନିକଟରେ ପହଞ୍ଚି ସ୍ଥୁଳର ପାଟିରେ ଓ ନାଚରେ ତା' ପଢ଼ାରେ ବ୍ୟାଘାତ ଘଟିବାରୁ ବିରକ୍ତ ହୋଇ ପ୍ରଶ୍ନ କରିଛି । )

୩ୟ- କିଏ ତୁମେ ? କାହିଁକି ଏମିତି ହେଉଛ ? ଟିକେ ଚୁପ୍ କର ।

ସ୍ଥୁଳ- (ତାକୁ ଦେଖିଛି ଏବଂ ତା ପ୍ରଶ୍ନରେ ରାଗି ଯାଇଛି ) -ମୁଁ ... ? ମୁଁ ଜୀବ... ମୁଁ ପ୍ରଭୁ.. । ମୁଁ ଶାସକ...(ଚାବୁକରେ ପ୍ରହାର କରିବା )

୩ୟ- (ନିଜକୁ ଚାବୁକ ପ୍ରହାରରୁ ବଞ୍ଚାଇ ନେଇ ) ପ୍ରଭୁ... କାହାର ପ୍ରଭୁ... ? କାହାକୁ ଶାସନ କରିବ ?

ସ୍ଥୁଳ- ତୋର ପ୍ରଭୁ.. . ସାରା ଜଗତର ପ୍ରଭୁ ... ।

୩ୟ- ସାରା ଜଗତ... ? କ'ଣ ଜାଣ ଏ ଜଗତ ବିଷୟରେ ? ଦେଖିଛ ?

ସ୍ଥୁଳ- (ଅଟକି ଯାଇ ସନ୍ଦେହରେ ) ତୁ ଦେଖିଛୁ ? ତୁ ଜାଣୁ ?

୩ୟ- ଏ ବିଶ୍ୱ ଏଡ଼େ ବିରାଟ ...କେହି ବି ଦେଖି ପାରିବେନି । ଆଉ ତୁମେ ତାର ପ୍ରଭୁ ହେବ କିପରି ?

ସ୍ଥୁଳ- ମିଛ, ଏଇତ ବିଶ୍ୱ । କ୍ଷୁଧା, ବିଶ୍ରାମ... ଆଉ ଶାସନ । ମୁଁ ବଞ୍ଚିଛି । ମୁଁ ବଞ୍ଚିବି। ଖାଇବି ଆଉ ବଞ୍ଚିବି । ଆଉ , ଆଉ ଶାସନ କରିବି ସମସ୍ତଙ୍କୁ । ସାରା ଜଗତକୁ

୩ୟ- ପୁଣି ସାରା ଜଗତ ? (ଖୁବ୍ ଜୋରରେ ହସି ଉଠିଛି)

ସ୍ଥୁଳ- ହଁ.. ମୁଁ ଶାସନ କରିବି ...

ଶୀଘ୍ର- ହଁ...ହଁ.. କୁହ । କାହାକୁ ଶାସନ କରିବ ? ଯାହାକୁ ଦେଖିନ ? ଯାହାକୁ ଜାଣିନ ? ପାଗଳ ତୁମେ ? ପାଗଳ.. ତୁମେ... ଅଜ୍ଞାନ ।

ସ୍ଥୁଳ- ମୁଁ ଅଜ୍ଞାନ ? ଆଉ ତୁ ଜାଣୁ ? କହ, କଣ ଅଧିକା ଜାଣିଛୁ ତୁ ? ନଚେତ୍ ... ତୋତେ (ଚାବୁକ ଉଠାଇଛି )

ଶୀଘ୍ର- (ହସିଉଠି) ତୁମେ ମୋତେ ବି ଜାଣିନ ? କିଛି ଜାଣିନ । ମୁଁ କିନ୍ତୁ ଜାଣେ।

ସ୍ଥୁଳ- କାହାକୁ ? କଣ ?

ଶୀଘ୍ର- ତୁମକୁ । ତୁମ ପରି ଅନେକଙ୍କୁ ।

ସ୍ଥୁଳ- ମୋପରି ... ଅନେକ... ?

ଶୀଘ୍ର- ହଁ ତୁମ ପରି ଅନେକ ପାଗଳ ଅଛନ୍ତି । ଯେଉଁମାନେ କେବଳ ବଞ୍ଚିବା ପାଇଁ ଖାଇ ଖାଇ ଶେଷରେ କେବଳ ଖାଇବା ପାଇଁ ବଞ୍ଚି ରହିଛନ୍ତି । ହାତରେ ଚାବୁକ ଧରି ଯେତେବେଳେ ଶାସନ କରିବାକୁ କାହାକୁ ପାଇବେନି ପ୍ରଭୁତ୍ୱର ମହାଗର୍ବରେ ଆତ୍ମହତ୍ୟା କରିବେ ।

ସ୍ଥୁଳ- (ଚିତ୍କାର କରି ଉଠିଛି) ନା...ମିଛ...। ତୁମେ ... ? ନା ..ନା.. ମୁଁ ବିଶ୍ୱାସ କରେନି...

ଶୀଘ୍ର- (ବହିର ପୃଷ୍ଠା ଓଲଟାଇ ) ଏଇ ପଢ଼ ।.....ଏଇ ଯେଉଁମାନେ ପ୍ରଭୁତ୍ୱର ନିଶାରେ ବେଶ୍ କିଛି ଦିନ ଉନ୍ମତ୍ତ ରହିଲେ କଣ ହେଲା ଶେଷରେ ସେମାନଙ୍କର ... (ବହି ଦେଇଛି)

ସ୍ଥୁଳ - (ବହି ନେଇ ପଢ଼ିବାକୁ ଆରମ୍ଭ କରିଛି) ହିରଣ୍ୟାକ୍ଷ....ରାବଣ....ଦୁର୍ଯ୍ୟୋଧନ....ବିସ୍ମାର୍କ.... ଷ୍ଟାଲିନ....ହିଟଲର... (ପ୍ରତ୍ୟେକଙ୍କ ନାମ ସହ ତାଙ୍କର ପ୍ରାଥମିକ ଉତ୍ସାହ ଓ ପରବର୍ତ୍ତୀ ଯନ୍ତ୍ରଣାର ଅଭିନୟକରୁଛି) ନା... ନା...(ନିଜେ ଯନ୍ତ୍ରଣା ଜର୍ଜରିତ ହୋଇଉଠିଛି) କଣ ଅଛି ଏ ବହିରେ ଆଉ ?

ଶୀଘ୍ର- ଜ୍ଞାନ । ସମସ୍ତ ବିଷୟରେ ଜ୍ଞାନ । ସମସ୍ତ ଘଟଣାର କାରଣ , କାରକ .. ଓ ପରିଣାମ ।

ସ୍ଥୂଳ - (ବିନମ୍ର ଭାବରେ)-ତୁମେ... ତୁମେ ମୋତେ ଏ ବହି ଦେବ ?

୩ୟ- ବେଶ୍ । ତୁମ ଭିତରେ ଜିଜ୍ଞାଷା ଉଦ୍ରେକ ହୋଇଚି । ରଖ ସେ ବହି, ପଢ଼ । (ଏକ ରଶୀ ସ୍ଥୂଳ ହାତରେ ବାନ୍ଧି ଫେରି ଯାଇଛି ତା ପାଇଁ ଉଦ୍ଦିଷ୍ଟ ଆସନକୁ)

ସ୍ଥୂଳ - (୧ମ,୨ୟ,୩ୟଙ୍କର ପର୍ଯ୍ୟାୟ କ୍ରମେ ରଶୀ ହଲାଇବା ଅନୁସାରେ ଖାଇବା, ଚାବୁକ ମାରିବା ଓ ବହି ପଢ଼ିବାର ଅଭିନୟ କରି ଚାଲିଥାଏ )

(ଏକ ତୂରୀ ବଜାଇ ବଜାଇ ପ୍ରବେଶ କରିଛି ୪ର୍ଥ ଚରିତ୍ର - ବ୍ୟୁହ୍ବାନର ପ୍ରତିନିଧି । ତୂରୀର ଶବ୍ଦରେ ସ୍ଥୂଳ ଚାହିଁଛି ତାକୁ । ସ୍ଥୂଳକୁ ଦେଖିପାରି ତାକୁ ତୀକ୍ଷ୍ଣ ଦୃଷ୍ଟିରେ ଅନୁଧାନ କରି)

୪ର୍ଥ- ଓଃ, ମୁଁ ଦେଖୁଛି ... ତୁମେ ସମ୍ପୂର୍ଣ୍ଣ ସୁସ୍ଥ ।

ସ୍ଥୂଳ - (ହସି ସମ୍ମତ ହେବା )

୪ର୍ଥ- ତୁମେ ପୁଣି ବିଜୟାମ୍ବରେ ବିମଣ୍ଡିତ ।

ସ୍ଥୂଳ - (ଅଟ୍ଟହାସ୍ୟ)

୪ର୍ଥ- ଆଉ ... ପାଣ୍ଡିତ୍ୟ, ବେଶ୍ ଅଛି ତୁମର ।

ସ୍ଥୂଳ- (ନମ୍ର ଭାବରେ ସମ୍ମତ ହେବା )

୪ର୍ଥ -କିନ୍ତୁ.... ଏ ସବୁ ଥାଇ ବି ତୁମେ ...ନା, ନା । ମୁଁ ଯାଏ । ତୁମେ ହୁଏତ ମୋ ପାଇଁ ପ୍ରତିବନ୍ଧକ ସୃଷ୍ଟି କରିପାର । (ତୂରୀ ବଜାଇବାକୁ ଉଦ୍ୟତ)

ସ୍ଥୂଳ - ରୁହ । କିଏ ତୁମେ ? କଣ ଏ ଶବ୍ଦ ?

୪ର୍ଥ- (ମୃଦୁ ହସି)ଜ୍ଞାନୀ ତୁମେ , ମୋତେ ଚିହ୍ନି ପାରୁନ ?

ସ୍ଥୂଳ - ତୁମ ଏ ତୂରୀର ଶବ୍ଦ... ମୋତେ ଭିନ୍ନ ଏକ ଭାବର ଆବେଶ ଦେଉଛି । ହେଲେ କଣ ସେ ଭାବ ... ? କିଏ ତୁମେ ?

୪ର୍ଥ - ପାଣ୍ଡିତ୍ୟ ମାଧମରେ ଜ୍ଞାନ ...ଖୁବ୍ ସୀମିତ ମନେ ହେଉଚି । ବିନା ଅନୁଭବରେ, ସବୁ ନିରର୍ଥକ ।

ସ୍ଥୂଳ - ଅନୁଭବ ? ହଁ ଠିକ୍ କହିଛ ତୁମେ । ମୋର ହୁଏତ ଅନୁଭବ ଆବଶ୍ୟକ ।

୪ର୍ଥ - ବେଶ୍, ତା ହେଲେ ଅଭିଳାଷ କର । ଉଚ୍ଚାଭିଳାଷ । ଯେତେ ଥିଲେ ବି

ଆହୁରି... ଆହୁରି । ଏ ତୂରୀ ଶବ୍ଦର ଅସୀମ ଶବ୍ଦ ତରଙ୍ଗରେ ତୁମେ ଖୋଜିବ... ଆହୁରି... ଆହୁରି । କିଛି ବି ପ୍ରାପ୍ତିରେ ତୃପ୍ତ ହେବା ହେଉଛି ଅଜ୍ଞାନର ,ସର୍ବଜ୍ଞ ଛଳନା.... ଅତୃପ୍ତିରେ ଦୁର୍ଲ୍ଲଭର ଅନୁସରଣ..। ଚିରନ୍ତନ ଅଭିଳାଷ.. ଯାହାର ସୀମା ନାହିଁ। ଯାହା ଅସୀମ..ମୁଁ ସେଇ ଅସୀମର..ଯାତ୍ରୀ (ତୂରୀ ବାଦନ)ବ୍ୟୁତ୍ଥାନ...ବ୍ୟୁତ୍ଥାନ.. ।

ସ୍ଥୂଳ - (ଧୀରେ ଧୀରେ ଉର୍ଦ୍ଧ୍ୱକୁ ହସ୍ତ ଉତ୍ତୋଳନ କରି) ବ୍ୟୁତ୍ଥାନ...ମୁଁ ଉତିଷ୍ଠିତ..। ବ୍ୟୁତ୍ଥାନ...(ଭାବାବେଶ ହୋଇଉଠିଛି )

୪ର୍ଥ - (ତା ହାତରେ ତୂରୀ ଧରେଇ ଦେଇ ରଶି ବାନ୍ଧୁ ବାନ୍ଧୁ )ବଜାଅ... ବଜାଅ .. ଏ ତୂରୀ ... ନିଜେ ବଜାଅ ।

ସ୍ଥୂଳ - (ତୂରୀ ବଜାଇବା ଆରମ୍ଭ କରିବ ଓ ଆଗକୁ ଦୌଡୁଥିବାର ଅଭିନୟ କରିବ ।)

୪ର୍ଥ - (ରଶିର ଅନ୍ୟ ମୁଣ୍ଡ ହାତରେ ଧରି ତା ପାଇଁ ଉଦ୍ଦିଷ୍ଟ ଆସନକୁ ଚାଲିଯାଇଛି) (୧ମ, ୨ୟ, ୩ୟ ଓ ୪ର୍ଥ ଚରିତ୍ରମାନଙ୍କର ରଶିର ନିର୍ଦ୍ଦେଶ ଅନୁସାରେ ସ୍ଥୂଳ ପର୍ଯ୍ୟାୟ କ୍ରମେ ଅଭିନୟ କରିବ । )

(ହାତରେ ଆଲୋକର ଶିଖା ଧରି ପ୍ରବେଶ କରିଛି ୫ମ ଚରିତ୍ର ଜ୍ୟୋତିର ପ୍ରତିନିଧି -- ନାରୀ ଚରିତ୍ର । ତାକୁ ଦେଖି ଅନ୍ୟ ଚାରି ଚରିତ୍ର ତାଚ୍ଛଲ୍ୟ କରି ହସି ଉଠିଛନ୍ତି । ୫ମ ସେ ଆଲୋକକୁ ନେଇ ଘୁରି ବୁଲିଛି ସ୍ଥୂଳ ଚରିତ୍ରର ଚାରି ପାଖରେ ଓ ତା ସମ୍ମୁଖରେ ଟେକି ଧରିଛି ସେ ଆଲୋକ ଶିଖାକୁ)

ସ୍ଥୂଳ - (ଗମ୍ଭୀର ଭାବରେ ଅନୁଧ୍ୟାନ କରି) କିଏ ତୁମେ... ?

୫ମ - ବେଶ୍, ଭୁଲି ଗଲଣି.... ?

ସ୍ଥୂଳ - (ବିରକ୍ତିରେ) ମୁଁ ତୁମକୁ ଜାଣେନା ... କେବେ ବି ଦେଖିନି । କିଏ ତୁମେ.. ?

୫ମ - (ଆତଙ୍କିତ ହୋଇଉଠିଛି) ମୁଁ ଜ୍ୟୋତି । ତୁମେ ମୋତେ ଚିହ୍ନିପାରୁନ ?

(ଅନ୍ୟମାନେ ହସି ଉଠିଛନ୍ତି)

ସ୍ଥୁଳ - ଜ୍ୟୋତି ? କାହିଁ ? ମୋର ଖାଦ୍ୟ,ପେୟ, ବିଶ୍ରାମ କିମ୍ବା ଶରୀର ଚର୍ଚ୍ଚାରେ କେବେ ବି ଆବଶ୍ୟକ ହୋଇନ ।

ଝମ - ମୁଁ ଆବଶ୍ୟକ ହୋଇନି ? କଣ କହୁଛ ତୁମେ ? ମୋ ବ୍ୟତୀତ ତୁମର ସ୍ଥିତି...

ସ୍ଥୁଳ - ମୋ ପ୍ରଭୁତ୍ୱ ପ୍ରତିଷ୍ଠାରେ ତୁମର ଭୂମିକା ନଥିଲା ।

ଝମ - ମୋ ବ୍ୟତୀତ ତୁମର ନିଜସ୍ୱ ଭୂମିକା ନାହିଁ ।

ସ୍ଥୁଳ- ତୁମେ ମୋ ଜ୍ଞାନର ବହିର୍ଭୂତ ।

ଝମ - ଜଡିତ, ନିମଗ୍ନ । ତେଣୁ ସସୀମ ତୁମର ସେ ଜ୍ଞାନ ପାର୍ଥକ୍ୟ ଖୋଜି ଖୋଜି ହତାଶ ହୋଇଛି ।

ସ୍ଥୁଳ - ମୋ ଚିରନ୍ତନ ଅଭିଳାଷର ବସ୍ତୁ ...

ଝମ - ଅବସ୍ତୁ । ଅବାସ୍ତବ ।

ସ୍ଥୁଳ - (ଚିତ୍କାର କରି ଉଠିଛି ) ନା । ମୁଁ ତୁମକୁ ଅସ୍ୱୀକାର କରେ । କାହିଁ, କାହିଁ କ୍ଷୁଧା ? ଆସ ଏହାକୁ ଭକ୍ଷଣ କର ।

ଝମ - (ଘୁଞ୍ଚି ଆସିଛି ଏବଂ ଆଲୋକର ଉଜ୍ଜ୍ୱଳତା ହ୍ରାସ ହୋଇଛି )

ସ୍ଥୁଳ - ଆସ ଈଶତ୍ୱ ଏହାକୁ ଶାସନ କର ।

ଝମ - (ଯନ୍ତ୍ରଣାରେ ମ୍ରିୟମାଣ ହୋଇଉଠିଛି । ଆଲୋକ ହ୍ରାସ)

ସ୍ଥୁଳ - ମୋର ଉଚ୍ଚାଭିଳାଷରେ ପ୍ରତିବନ୍ଧକ ହେବାକୁ ତୁମର କୌଣସି ଅଧିକାର ନାହିଁ । ଦୂର ହୁଅ ମୋ ସମ୍ମୁଖରୁ । ନଚେତ୍...

ଝମ - (ପ୍ରାୟ ଲିଭି ଯିବାକୁ ବସିଥିବା ସେ ଆଲୋକ ଶିଖାକୁ କୌଣସି ପ୍ରକାରେ ନିଜ ପଣତ ବା ପୋଷାକରେ ଢାଙ୍କୁଣି ଦେଇ ଯନ୍ତ୍ରଣା ସହ ଉଦ୍ଦିଷ୍ଟ ଆସନକୁ ଫେରି ଆସିଛି ଓ ଶିଖାର ଯତ୍ନ ନେଇଛି । ସ୍ଥୁଳର ତୂରୀ ବାଦନ ଶବ୍ଦ ଓ ଅନ୍ୟ ଚରିତ୍ରମାନଙ୍କ ଉତ୍କଟ ହସ ଭିତରେ ମଞ୍ଚ ଅନ୍ଧକାର)

***

## ଗତି-୧

(ମଞ୍ଚରେ ଏକ ସାମାଜିକ ନାଟକର ପରିବେଶ । ପରଦା ଉଠିବା ପରେ ଆଲୋକିତ ମଞ୍ଚରେ ଦେଖାଯାଏ ଗୋଟିଏ ତକ୍ତପୋଷ ଉପରେ ଗଦି ଓ ତକିଆରେ ଅର୍ଦ୍ଧଶାୟିତ ଭୀମସେନ ବାବୁ (୧ମ ଚରିତ୍ର)ପାଖରେ ଥିବା ଏକ ପ୍ଲେଟ୍‌ରୁ କାଜୁ ବାଦାମ ଖାଉଛନ୍ତି । ଜ୍ୟୋତି ପ୍ରବେଶ କରିଛି, ଗୋଟିଏ ଜଗ ପାଣି ଓ ଗ୍ଲାସ ନେଇ । ସେ ପାଣି ଢାଳୁଥିବା ବେଳେ ଭୀମବାବୁ ତାକୁ ଅନାଇ ହସି)

ଭୀମ - ଏ ପାଣି ?

ଜ୍ୟୋତି - କୂଅ ପାଣି ସାର୍ ।

ଭୀମ- ଫୁଟେଇ ଥଣ୍ଡା କରିଛ ?

ଜ୍ୟୋତି - ସାର୍ ।

ଭୀମ - ଲେମ୍ବୁରସ ... ?

ଜ୍ୟୋତି - ଦେଇଛି ।

ଭୀମ - (ପାଣି ଗ୍ଲାସ ନେଇ )ଆଚ୍ଛା । (ପାଣି ପିଇ ନେଇ) ଆଜି... ?

ଜ୍ୟୋତି - ଶନିବାର । ଅକ୍ଟୋବର ଦଶ ।(ନାଟକ ମଞ୍ଚସ୍ଥର ଦିନ ଓ ତାରିଖ)

ଭୀମ - (ଶୋଇବାର ଉପକ୍ରମ କରି) ପାଗ... ?

ଜ୍ୟୋତି - ୩୫ ମିନିଟ ପୂର୍ବରୁ ଆରମ୍ଭ ହୋଇଯାଇଥିବା ଝିପି ଝିପି ବର୍ଷା ବନ୍ଦ ହୋଇଯାଇଛି । ଉତ୍ତରା ପବନ ଓ ପଶ୍ଚିମା ମେଘ ଖଣ୍ଡରେ ସାମାନ୍ୟ ବିଜୁଳି ଯେ କୌଣସି ମୁହୂର୍ତ୍ତରେ ବର୍ଷା ହେବ । ସରକାରୀ ପାଣିପାଗ ଘୋଷଣା ଅନୁସାରେ ମଧ୍ୟମରୁ ପ୍ରବଳ ବର୍ଷା ୨୪ ଘଣ୍ଟା ଲାଗି ରହିବ । ପରେ ପାଗରେ ସାମାନ୍ୟ ପରିବର୍ତ୍ତନ ।

ଭୀମ - (ଜ୍ୟୋତିର କଥା ଭିତରେ ଶୋଇ ଯାଇଛନ୍ତି)

ଜ୍ୟୋତି - (ଶୋଇପଡିବାର ଦେଖି ସାମାନ୍ୟ ହସି ଦେଇ ପାଣି ପାତ୍ର ନେଇ ଚାଲିଯିବାକୁ ଉଦ୍ୟତ ହେବା ବେଳେ ଝଡ ବେଗରେ ପ୍ରବେଶ କରିଛନ୍ତି ସମ୍ରାଟ ବାବୁ (୨ୟ ଚରିତ୍ର)ପାଟିରେ ଆଙ୍ଗୁଠି ଦେଇ ନିରବ ରହିବାର ଇଙ୍ଗିତ କରି) କଣ ଦରକାର... ?

ସମ୍ରାଟ - (ପରିବେଶକୁ କ୍ଷଣେ ଅନୁଧ୍ୟାନ କରି) What nonsense! (ଘଡି ଦେଖି) ଏ ପର୍ଯ୍ୟନ୍ତ ବି ଏଠି ସକାଳ ହୋଇନି ?

ଜ୍ୟୋତି - ଭୁଲ ବୁଝିଲେ ଆଜ୍ଞା । ଆଜି ତାରିଖରେ ଏ ପ୍ରଥମ ବିଶ୍ରାମ ।

ସମ୍ରାଟ - ଉଠାନ୍ତୁ ।

ଜ୍ୟୋତି - ଦରକାର କଣ ନଜାଣି ... ?

ସମ୍ରାଟ- (ରାଗିଯାଇ) ମୁଁ, ମୁଁ ସମ୍ରାଟ ସିଂ ଚାହୁଁଛି ।(ପାଟିରେ ଭୀମବାବୁଙ୍କ ନିଦ ଭାଙ୍ଗିଛି। ସେ ହାଇ ମାରି ଉଠିଛନ୍ତି ଓ ସମ୍ରାଟଙ୍କୁ ଦେଖି ପାଖରେ ବସିବାକୁ ଇଙ୍ଗିତ କରି) ଜ୍ୟୋତି !

ଜ୍ୟୋତି - ସାର !

ଭୀମ - (ଜ୍ୟୋତିଙ୍କୁ ପାଖରେ ଦେଖି) ଚା' ।

ସମ୍ରାଟ - ଭୀମବାବୁ, ଆପଣ ଆପଏଣ୍ଟମେଣ୍ଟର ନୋଟ ରଖନ୍ତିନି କି ?

ଭୀମ - ଅତ୍ୟନ୍ତ ଆବଶ୍ୟକ ନଥିଲେ ମୋ ସହ କାହାରି ସାକ୍ଷାତ ହୁଏନି । ଯଦିବା ହୁଏ ଏ ପ୍ରକାରର ଅସୁବିଧାକୁ ମୁଁ ଭଲ ଭାବରେ ଗ୍ରହଣ କରିନିଏ । ଆପଣ କଣ ଅନେକ ବେଳୁ ?

ସମ୍ରାଟ - ଅନେକ ବେଳୁ ? ମାନେ, ମୁଁ ଅନେକ ବେଳୁ ଅପେକ୍ଷା କରିଛି ? ଅସମ୍ଭବ। ମୋ ପାଖରେ ଖାଇବାକୁ ବି ସମୟ ନାହିଁ ।

ଭୀମ - ସବୁ ସମୟଗୁଡାକ ଏମିତି ଭାବରେ ନଷ୍ଟ କରି ....

ସମ୍ରାଟ - ଛାଡନ୍ତୁ, ମୁଁ ଆଜି ସନ୍ଧ୍ୟା ଫ୍ଲାଇଟରେ ଚାଲିଯିବି ।

ଭୀମ - ଆଜି ସନ୍ଧ୍ୟାରେ ? ଆପଣ ଚେକ୍ ନେଇ ଯାଆନ୍ତୁ । ହେଲେ ଆଜି ଜ୍ଞାନବାବୁଙ୍କ Dinner ।

ସମ୍ରାଟ - (ହସି) ଖାଲି Dinner, lunch, breakfast ଆଉ Tea .

ଜ୍ୟୋତି - (ଚା' ଆଣି ପ୍ରବେଶ କରିଛି) Tea ସାର ।

ସମ୍ରାଟ - (ଭୀମବାବୁଙ୍କୁ) ଚେକ୍ ।

ଭୀମ - (ଜ୍ୟୋତିଙ୍କୁ) ଚେକ୍ ।

ଜ୍ୟୋତି- (ସମ୍ରାଟଙ୍କୁ)Tea .

ସମ୍ରାଟ- (ବିରକ୍ତିରେ ଚା କପ୍ ନେଇ)All right , Get the Cheque now.

ଭୀମ - ହଁ, (ଜ୍ୟୋତିକୁ) ଚେକ୍ ଦେବା ପୂର୍ବରୁ ଆଉ ଟିକେ ସେ Indend note ଚେକ୍ କରିନେବୁ ।

ସମ୍ରାଟ - ଚେକ୍ କରିନେବ ?

ଭୀମ - (ବ୍ୟସ୍ତ ନହେବାର ଇଙ୍ଗିତ ଦେଇ)Tea, please (ଜ୍ୟୋତି ପ୍ରସ୍ଥାନ)

ସମ୍ରାଟ- (ଯୋଗା ନପାଇ ଚା କପ୍ ଧରି ଛିଡା ହୋଇ ପିଇବାକୁ ଆରମ୍ଭ କରିବା )

ଭୀମ - (ଟିକେ ଘୁଞ୍ଚି ଯାଇ )ଆରେ, ଏଇଠି ବସନ୍ତୁ ନା .... ।

ସମ୍ରାଟ- ଆପଣ ଏଠି ଖଣ୍ଡେ ଦୁଇ ଖଣ୍ଡ .....

ଭୀମ - ଚେୟାର... ?

ସମ୍ରାଟ- ହଁ, At least a sofa.

ଭୀମ - (ହସି)କାହିଁକି ?ବସିବା କିମ୍ବା ବସିବାକୁ ଉତ୍ସାହିତ କରିବା, ନିହାତି ନିରର୍ଥକ ।

ସମ୍ରାଟ- ମାନେ ... ?

ଭୀମ - ଦେଖନ୍ତୁ, କାମ କରିବାଟା, ଚାଲିବାଟା, ତାରି ଭିତରେ କାମ ନଥିଲେ ଦେହଟାକୁ ପୂର୍ଣ୍ଣ ବିଶ୍ରାମ ଦିଅନ୍ତୁ । କେବଳ ହୁଏତ ଖାଇବା ବେଳେ ବସିବାର ଆବଶ୍ୟକତା ଅଛି ...। ଏ ଘରେ କେବେ କାହାରି ଖାଇବାର ଦରକାର ପଡ଼ିନି ।

ସମ୍ରାଟ- A good thesis.କାମ କରିବା, ଚାଲିବାକୁ ମିଶାଇ ତାର ଆବଶ୍ୟକତା ଅଛି ତ ?

ଭୀମ - ଯଦି ଜଣେ ଯତ୍ନଶୀଳ ହୋଇପାରେ Exactly, sincer ଭାବେ ଚାହେଁ, ନକଲେ ବି ଚଳିବ ।

ସମ୍ରାଟ- (ଖୁବ୍ ଜୋରରେ ହସି ଉଠିଛି ଓ ହାତରୁ ଚା କପ୍ ଖସି ପଡିଛି --ଜ୍ୟୋତି

ପ୍ରବେଶ କରିବାର ଦେଖି) ଚେକ୍ ଦିଅନ୍ତୁ । ଏଠି ରହିଲେ ମଣିଷ ପାଗଳ....।

ଜ୍ୟୋତି - (ଚେକ୍ ବଢ଼େଇଦେଇ)ଚେକ୍ । ଆଉTea?

ସମ୍ରାଟ- No thanks.(ଚେକ୍ ଦେଖିନେଇ) Thanks for your patriotism .

ଜ୍ୟୋତି - ସାର୍ Indend listଦେଖିଲେ ; ସମସ୍ତ ଖାଦ୍ୟ ସାମଗ୍ରୀ ଅପେକ୍ଷା Indend list ବେଶି ।

ଭୀମ - ଆରେ Grand total ଠିକ୍ ଅଛି ତ ?

ସମ୍ରାଟ - (ହସି) ଖାଲି ଖାଇବା ହୋଇଗଲେ କାମ ହୁଏନି । କାମ ପାଇଁ ସରଞ୍ଜାମ ଆବଶ୍ୟକ । Equipments

ଜ୍ୟୋତି - ଓଃ, ତା ହେଲେ ସେ Amount ରେAmunitions...

ସମ୍ରାଟ- Exactly, Advance command ପାଇଁ କିଛି L.M.G. Thank you all (ଦୃତ ପ୍ରସ୍ଥାନ)

(ଜ୍ୟୋତି ତାଙ୍କ ଯିବା ବାଟକୁ ଚାହିଁ ସାମାନ୍ୟ ହସି ଚଲୁ କପ୍ ପ୍ଲେଟ ଓ ଅନ୍ୟାନ୍ୟ ସବୁ ନେଇ ଚାଲି ଯାଇଛି । ଭୀମବାବୁ ଦୁଇଟା କାଜୁ ପାଟିରେ ପକାଇ ପୁଣି ଶୋଇପଡିଛନ୍ତି । ପ୍ରବେଶ କରିଛନ୍ତି ଜ୍ଞାନବାବୁ (ଗୌଣ ଚରିତ୍ର)ପରିବେଶକୁ ଦେଖି ହତାଶ ହୋଇପଡି ଧୀରେ ପଦ ଚାଳନା କରିଛନ୍ତି ଓ ଚାପା ଗଳାରେ ଡାକିଛନ୍ତି ଜ୍ୟାତିକୁ । ଜ୍ୟୋତି ପ୍ରବେଶ କରିଛି)

ଜ୍ୟୋତି - ନମସ୍କାର ସାର୍ । ଆପଣଙ୍କ ନିମନ୍ତ୍ରଣ ପାଇଛୁ ।

ଜ୍ଞାନ - ଭୀମବାବୁ କଣ ଏ ପର୍ଯ୍ୟନ୍ତ ... ?

ଜ୍ୟାତି - ନା ସାର୍ । ସେ ବ୍ରେକଫାଷ୍ଟ ପରେ ଟିକେ ଲାଇଟ୍ ରେଷ୍ଟ ।

ଜ୍ଞାନ - ତେବେ... ?

ଜ୍ୟୋତି - କଣ କିଛି ଜରୁରୀ... ?

ଜ୍ଞାନ - ହଁ । ଯେଉଁ ସମ୍ବନ୍ଧରେ କଥାବାର୍ତ୍ତା ପାଇଁ ଆଜିର ଏ ନିମନ୍ତ୍ରଣ... ସନ୍ଧ୍ୟାରେ ଅବଶ୍ୟ...

ଜ୍ୟୋତି - ଆମେ ତ ସନ୍ଧ୍ୟାରେ ଯିବୁ ।

ଜ୍ଞାନ - ନା' ନା 'ଜ୍ୟୋତି । ତା ପୂର୍ବରୁ ଆମେ ଦୁହେଁ କିଛି ଗୋଟାଏ ନିହାତି ଜରୁରୀ... । ତେଣୁ ମୁଁ ବାଧ ହୋଇ ....

ଜ୍ୟୋତି - ତେବେ ଭିତରକୁ ଚାଲନ୍ତୁ । ଅପେକ୍ଷା କରିବେ ।

ଜ୍ଞାନ - (ବ୍ୟସ୍ତ ହୋଇ )ବର୍ତ୍ତମାନ କଥା ହୋଇପାରିଲେ ....

ଜ୍ୟୋତି - (ସାମାନ୍ୟ ହସିଚି ଓ ଭୀମବାବୁଙ୍କ ହାତ ତଳୁ କାଜୁ ବାଦାମ ପ୍ଲେଟ ଉଠାଇ ନେଇଛି)

(ଭୀମବାବୁଙ୍କ ନିଦ ଭାଙ୍ଗି ଯିବାରୁ ସେ ଅସ୍ୱସ୍ତିରେ ସବୁ ଆଡ଼କୁ ଅନାଇବା)

ଜ୍ଞାନ - (ଆଗକୁ ଯାଇ)ନମସ୍କାର ସାର୍ ।

ଭୀମ - (ଆଖି ମଳି ମଳି) ନମସ୍କାର ...ନମସ୍କାର, ଆପଣ ପୁଣି କଷ୍ଟ କରି ନିଜେ ଆସିଲେ .... ।

ଜ୍ଞାନ - ନା ଆଜ୍ଞା, ଗୋଟାଏ ଜରୁରୀ...

ଭୀମ - ଜ୍ୟୋତି ?

ଜ୍ୟୋତି - ସାର୍ ।

ଭୀମ - ପ୍ରଫେସରଙ୍କ ପାଇଁ..

ଜ୍ଞାନ - ନା, ଆଜ୍ଞା । କିଛି ଦରକାର ନାହିଁ । ମୁଁ କେବଳ...

ଭୀମ - ଆରେ ମୁଁ ଜାଣେ , ଆପଣମାନେ ଏତେବେଳେ, ମାନେ ଅବେଳରେ କେମିତି ଖାଇବାକୁ ହେବ ଜାଣନ୍ତି ନାହିଁ । ହେଲେ, ଚା -କଫି କିମ୍ବା ସର୍ବତ ଟିକେ....

ଜ୍ୟୋତି - କଣ ଆଣିବି କୁହନ୍ତୁ ।

ଜ୍ଞାନ - ନା ଜ୍ୟୋତି । ତେବେ ଗ୍ଲାସଟାଏ ଥଣ୍ଡା ପାଣି ଆଣ । ବରଂ ମୁଁ ଏଇ କାଜୁରୁ ଦୁଇଟା ...

ଭୀମ - (ହସିଉଠି) ଆଚ୍ଛା, ଆଚ୍ଛା (ଜ୍ୟୋତିର ପ୍ରସ୍ଥାନ) ଜରୁରୀ କ'ଣ କୁହନ୍ତୁ ।

ଜ୍ଞାନ - ମୁଁ ପ୍ରଥମେ ଠିକ୍ କରିଥିଲି ଆଜି ସନ୍ଧ୍ୟାରେ ଆମ ଘରଠି Research

institute ସମ୍ପର୍କରେ କଥାବାର୍ତ୍ତା କରିଥାନ୍ତେ । ହେଲେ ବର୍ତ୍ତମାନ ଗୋଟେ ଟେଲିଗ୍ରାମ ପାଇଲି.....

ଭୀମ - ଓଃ ଆପଣଙ୍କର ସେହି ନୂତନ ଶିକ୍ଷା ପଦ୍ଧତିପାଇଁ ।

ଜ୍ଞାନ - ହଁ ଆଜ୍ଞା ।

ଭୀମ - ହେଲେ ପ୍ରଫେସର୍ ଏ ସମ୍ପର୍କରେ ମୋ ସହ ଆଲୋଚନା କରିବାରେ କିଛି ନାହିଁ । ଆପଣ ସମସ୍ତ ଖର୍ଚ୍ଚର ଗୋଟାଏ ଏଷ୍ଟିମେଟ ସହ ଯାହା Advance ଦରକାର ମୋତେ କୁହନ୍ତୁ । ମୁଁ ଟଙ୍କା ଦେଇଦେବି । ଅନ୍ୟାନ୍ୟ କାମର ଆଲୋଚନା ମଧ୍ୟ ଆପଣମାନେ କରିବେ । ମୁଁ ନୁହେଁ ।

ଜ୍ଞାନ - (କୃତଜ୍ଞ ହୋଇଉଠି)ଆପଣଙ୍କ ନିକଟରେ ସମଗ୍ର ଦେଶ ଓ ତାର ଭବିଷ୍ୟତ ବଂଶଧରମାନେ ଋଣୀ ରହିବେ ସାର୍ ।

ଭୀମ - ସେ କଥା ଛାଡନ୍ତୁ, ଅନାବଶ୍ୟକ ହେଲେ ବି ମୋର ଗୋଟାଏ କୌତୁହଳ ଅଛି । ଆପଣମାନେ ଶିକ୍ଷା ପଦ୍ଧତି କିପରି, କଣ ହେବ ତାର ନିଷ୍ପତ୍ତି ପାଇଁ ଗୋଟାଏ ରିସର୍ଚ୍ଚ କରିବେ । କିନ୍ତୁ ତା ଫଳ ପାଇବେ କେବେ ଓ ସେ ପଦ୍ଧତିରେ ପାଠ ପଢ଼ା ହେବ କେବେ ?

ଜ୍ଞାନ - ଆପଣ, ମହାନ ଆଜ୍ଞା । ଅକୁଣ୍ଠିତ ଭାବେ ଆପଣଙ୍କ ଦାନର ପ୍ରତିଶ୍ରୁତି ଦେଇ ସାରି ଏ ଯେଉଁ କୌତୁହଳର ପ୍ରଶ୍ନ କରୁଛନ୍ତି,କେବଳ ସେଇ ପ୍ରଶ୍ନ ଆଳରେ ଅନ୍ୟମାନେ, ଏପରିକି ଶିକ୍ଷା କର୍ତ୍ତୃପକ୍ଷ ମଧ୍ୟ ଏ ଅନୁଷ୍ଠାନକୁ ପ୍ରଥମରୁ ପ୍ରତ୍ୟାଖ୍ୟାନ କରିଦେଲେ । କିନ୍ତୁ ଆଜ୍ଞା ଏହା ହିଁ ଏକମାତ୍ର ଉପାୟ ।

ଭୀମ - ମୁଁ ତୁମ ସହ ସମ୍ପୂର୍ଣ୍ଣ ସହମତ । ହେଲେ ଆପଣଙ୍କର ଏ ଅନୁଷ୍ଠାନ ଅନ୍ତତଃ କେବେ ....

ଜ୍ଞାନ - ପ୍ରଥମତଃ ଆମ୍ଭେମାନେ ୨୫ବର୍ଷ ପାଇଁ ଯୋଜନା କରିଛୁ । (ଜ୍ୟୋତି ପ୍ରବେଶକରି ପାଣି ଗ୍ଲାସ ଦେଇଛି )

ଭୀମ - ଜ୍ୟୋତି, ପ୍ରଫେସର କହୁଛନ୍ତି ଅନ୍ତତଃ ୨୫ବର୍ଷ ଅର୍ଥାତ୍ ପାଞ୍ଚଟି ପଞ୍ଚବାର୍ଷିକ ଯୋଜନାର ସମୟ ରିସର୍ଚ୍ଚ କଲେ ଯାଇ ପିଲାଏ କଣ ପଢ଼ିବେ ଠିକ୍ ହେବା

ଜ୍ଞାନ -	୨୫ବର୍ଷ ହୁଏତ ଯଥେଷ୍ଟ ହୋଇନପାରେ ଆଜ୍ଞା । ଶିକ୍ଷା,ଖାଦ୍ୟ କିମ୍ବା ଜାତୀୟ ଭାଷା ପରି ମୌଳିକ ସମସ୍ୟା ସବୁର ଏ ପାଞ୍ଚବର୍ଷିୟା ଯୋଜନା ଭିତରେ ଶିଳାନ୍ୟାସଠାରୁ ଆରମ୍ଭ କରି ଶୁଭ ଉଦ୍‌ଘାଟନ ପର୍ଯ୍ୟନ୍ତ ପରିକଳ୍ପନା ସମ୍ପୂର୍ଣ୍ଣ ନିରର୍ଥକ । ସମସ୍ୟାର ସମାଧାନ ନୁହେଁ -.ସମସ୍ୟାକୁ ଅବହେଳା କରିବା...

ଜ୍ୟୋତି - ସାର୍, ଠିକ୍ କହୁଛନ୍ତି । କିନ୍ତୁ କେଉଁଟା ମୌଳିକ,ତା ପାଇଁ ରିସର୍ଚ୍ଚ କରିବା ହୁଏତ ଆହୁରି ସମୟ ସାପେକ୍ଷ । (ପ୍ରସ୍ଥାନ)

ଭୀମ -	(ହସି ଉଠି) ଆଚ୍ଛା ପ୍ରଫେସର, ଆପଣ ଆଉ କଣ ଚାହାନ୍ତି ?

ଜ୍ଞାନ -	ନା ସାର୍, ମୁଁ କେବଳ ଆଉ ଥରେ ଧନ୍ୟବାଦ.... ।

ଭୀମ -	ଥାଉ ପ୍ରଫେସର, ଆପଣଙ୍କ ୨୫ବର୍ଷ ପରେ ଜ୍ୟୋତିର ୨୫ବର୍ଷରୁ ଅଧିକ ସମୟ ମିଶାଇ ଏ ସମସ୍ୟାର ସଠିକ ସମାଧାନ ହୋଇପାରେ. ଏ ଅଭିଳାଷ ଅନ୍ତତଃ ମୋର ନରହୁ ।

(ପ୍ରବେଶ କରିଛନ୍ତି ଅଭିଳାଷ ବାବୁ-୪ର୍ଥ ଚରିତ୍ର - ତାଙ୍କୁ ଦେଖିପାରି)

ଜ୍ୟୋତି -	ସାର୍, ଏଇତ ଅଭିଳାଷ ବାବୁ ଆସିଲେଣି ।

ଅଭିଳାଷ-	ନମସ୍କାର ସାର୍! ନମସ୍କାର ପ୍ରଫେସର ସାହେବ । ମୁଁ ଏଠୁ ଆପଣଙ୍କ ପାଖକୁ ଯାଇଥାନ୍ତି ।

ଭୀମ -	ଆଉ ଯିବା ଦରକାର ନାହିଁ । ହେଲେ ଏଠି କି ଦରକାର ପଡିଲା ?

ଜ୍ୟୋତି -	କେବଳ ଦର୍ଶନାଭିଳାଷ ?

ଅଭିଳାଷ-	(ହସି)ଜ୍ୟୋତି ଠିକ୍ କହିଛନ୍ତି । ହେଲେ କଥାଟା କଣ କି ସାର୍ , ମୁଁ କାଲି ଆପଣଙ୍କଠାରୁ ଯେଉଁ ଟଙ୍କା ନେଇଥିଲି ସେଥିରେ ଆଉ ଅଳ୍ପ କିଛି ମିଶାଇ ପାରିଲେ, ମଟର ସାଇକେଲଟେ ନକିଣି ବରଂ ପ୍ରଫେସରଙ୍କ କାରଟା....

ଜ୍ଞାନ -	ଓଃ...ସେଇଥିପାଇଁ ଯାଇଥାନ୍ତ ?

ଅଭିଳାଷ-	ହଁ ସାର୍, ଆପଣ ତ ନୂଆ ଗାଡି ଆଣିବେ ଏ ପ୍ରୋଜେକ୍ଟ ପାଇଁ ।

ଭୀମ -	(ବିରକ୍ତିରେ)ଦେଖ ଅଭିଳାଷ, ତୁମେ ମାତ୍ର ତିନି ଦିନ ତଳେ ଖଣ୍ଡେ

ସାଇକେଲ କିଣିବ ବୋଲି କହି, କିଛି କିଣିବା ପୂର୍ବରୁ ଆସି କାର....

ଅଭିଳାଷ- ସେକେଣ୍ଡ ହ୍ୟାଣ୍ଡ ସାର୍ ।

ଜ୍ୟୋତି - କାହିଁକି ? ଆଉ ଅଳ୍ପ ମିଶାଇଲେ ନୂଆ କାର ହୋଇଯିବ ।

ଭୀମ - ଦେଖ ଅଭିଳାଷ, (ବୁଝେଇବା ଭଙ୍ଗୀରେ)ଏତେଟା ଅସ୍ଥିର ମାନସିକତା ଭିତରେ ତୁମେ କୌଣସି କାମରେ ନିୟନ୍ତ୍ରଣ ରଖିପାରୁନ । ତୁମେ ପ୍ରଥମେ ଠିକ୍ କର ତୁମର କଣ ଆବଶ୍ୟକ । ତୁମେ କଣ କିଣିବ । ଏଇନେ କିମ୍ବା ଆଜି ନୁହେଁ । ଯାଅ, ମୋତେ କାଲି ଆସି କହିବ । ଆଉ ଠିକ୍ କରି କହିବ । ତା' ପରେ ମୁଁ କିଛି ଶୁଣିବିନି ।

ଅଭିଳାଷ- (ଆନନ୍ଦରେ) ଠିକ୍ ଅଛି ସାର । ଜ୍ୟୋତି କଥା ଅନୁସାରେ ଗୋଟେ ନୂଆ କାର ...

ଭୀମ - କହିଲି ନା, ଆଜି ନୁହେଁ କାଲି କହିବ ।

ଅଭିଳାଷ - ହଉ ସାର୍, ମୁଁ ଯାଉଛି । କାଲି ଆସି ଠିକ୍ କରି କହିବି । ସରି ପ୍ରଫେସର, ମୁଁ ଆଉ ଆପଣଙ୍କର ସେ କାର ....

ଜ୍ଞାନ - ଠିକ୍ ଅଛି ଏଥିରେ ଏତେ ....

ଜ୍ୟୋତି - ହଁ ଅଭିଳାଷ ବାବୁ, ନୂଆ ଗାଡି କହିଲେ ଆପଣଙ୍କ ସମସ୍ୟା ସରୁନି । ଫିଆଟ ଆମ୍ବାସଡର, ମର୍ସିଡେସ... କି ଇଂପାଲା ...

ଅଭିଳାଷ- ଏକଜାକ୍ଟଲି, ସେଇତ ପୁଣି ସମସ୍ୟା । ତେବେ କାଲି ସୁଦ୍ଧା ନିଶ୍ଚୟ କିଛି ଠିକ୍ କରିନେବି(ହଠାତ୍ ରହିଯାଇ ) ସାର୍ ଦୟା କରି ମୋତେ ଆଉ ଗୋଟେ ଦିନ ସମୟ ଦେଲେ ....(ସମସ୍ତେ ହସି ଉଠନ୍ତି ଓ ମଞ୍ଚ ଅନ୍ଧକାର)

**ପରଦା**

## ଗତି-୨

(ମଞ୍ଚରେ ପ୍ରସ୍ତୁତିର ମଞ୍ଚସଜା । ସ୍ଥୁଳ କେନ୍ଦ୍ରୀୟ ଆଲୋକିତ ଆବର୍ତ୍ତ ମଧ୍ୟରେ ଶୋଇ ରହିଛି । ୧ମ ଚରିତ୍ର ଆସନ ଆଲୋକିତ ହେବା ପରେ ଦେଖା ଦେଇଛି ସେ ହସି ହସି ରଶି ଟାଣୁଛି ଓ ସ୍ଥୁଳ ଉଠିପଡି ବ୍ୟାକୁଳ ଭାବରେ ଖାଇବାର ଅଭିନୟ କରିଛି। ୧ମ ଧୀରେ ଧୀରେ ହସି ଉଠିଚି ଓ ଗମ୍ଭୀର ଭାବରେ ସେଇଠୁ ପ୍ରଶ୍ନ କରିଛି)

୧ମ - ତୁମର ପରିଚୟ କଣ କହି ପାରିବ ?

ସ୍ଥୁଳ - (ଖାଇବା ମଝିରେ)ହଁ-ହଁ ମୁଁ ଜାଣେ । ହେଲେ ଟିକେ ରୁହନ୍ତୁ ।

୧ମ - କିଏ ? କିଏ ତୁମେ ?

ସ୍ଥୁଳ - (ଖାଇସାରି ଠିଆ ହୋଇ)ମୁଁ ? ମୁଁ ଜୀବ ।

୧ମ - ତୁମର ନାମ ଅଛି ?

ସ୍ଥୁଳ - ହଁ ଅଛି ।

୧ମ - ତୁମର ରୂପ ଅଛି ?

ସ୍ଥୁଳ - ନିଶ୍ଚୟ । ଦେଖିପାରୁନ ?

୧ମ - ତୁମର ସମ୍ପର୍କ ?

ସ୍ଥୁଳ - ଅନେକଙ୍କ ସାଙ୍ଗରେ ।

୧ମ - ତୁମର ଜନ୍ମ ?

ସ୍ଥୁଳ - (ମନେ ପକାଇ)ତାରିଖ କିମ୍ବା ତିଥି ମନେନାହିଁ ।

୧ମ - ତୁମର ବୟସ ?

ସ୍ଥୁଳ - ହିସାବ ସାପେକ୍ଷ । ଜନ୍ମ ତାରିଖ ମନେ ନପଡିଲେ ....।

୧ମ - ଆଉ ତୁମର ମୃତ୍ୟୁ ?

ସ୍ଥୁଳ - ମୃତ୍ୟୁ ? ମୃତ୍ୟୁ କଣ ମୁଁ ଜାଣେନି ।

୧ମ - ଜାଣନି ?

ସ୍ଥୁଳ - ଜାଣିବା କଣ ନିହାତି ଆବଶ୍ୟକ ?

୧ମ - (ହସି ଉଠିଛି ଓ ଆଗେଇ ଆସିଛି) ବେଶ୍, ତୁମେ ଜୀବ । ତୁମର ନାମ ଅଛି।

ତୁମର ସମ୍ପର୍କ ଅଛି । ତୁମର ଜନ୍ମ ଅଛି । ତୁମର ବୟସ ଅଛି । ଆଉ ତୁମର ମୃତ୍ୟୁ ମଧ୍ୟ ଅଛି । ତଥାପି ଏ ଜୀଇବାରେ ତୁମର ଆନନ୍ଦ ଅଛି । ତୁମେ ଜୀବ, ତୁମେ ଜୀଇବ । ଜୀଇବାର ଇଚ୍ଛା ତୁମର ବଳବତ୍ତର ରହୁ । ଏ ବନ୍ଧନ ତୁମର ପଥ ପ୍ରଦର୍ଶକ । ତୁମର ଏକମାତ୍ର ସ୍ଥିତି ଓ ଲକ୍ଷ୍ୟ । ସର୍ବୋପରି କାମ୍ୟ।

ସ୍ଥୂଳ - (ମୋହାବେଶରେ ସମ୍ମତି ଦେଇଛି)

୧ମ - ଜୀଇବାରେ ଆନନ୍ଦ ...

ସ୍ଥୂଳ- ପରମାନନ୍ଦ ।

୧ମ - ଜୀଇବାରେ ଆନନ୍ଦ....

ସ୍ଥୂଳ - ପରମାନନ୍ଦ ।

(ଏହି ସ୍ଲୋଗାନ ଭିତରେ ୧ମ ହସି ହସି ଫେରିଯାଇଛି ତା ଆସନକୁ ଓ ରଶି ହଲାଇବାରେ ସ୍ଥୂଳ ବିଭିନ୍ନ ଅଙ୍ଗଭଙ୍ଗୀ କରି , ଜୀଇବାର ଆନନ୍ଦ - ପରମାନନ୍ଦ କହି କହି ନାଚିବାକୁ ଲାଗିଛି । ଠିକ୍ ଏହି ସମୟରେ ଦ୍ୱିତୀୟ ଆସନ ଆଲୋକିତ ହୋଇଛି । ୨ୟ ଖୁବ୍ ଜୋରରେ ହସି ଉଠି ତା ରଶିକୁ ଟାଣି ଦେଇଛି । ସ୍ଥୂଳ କ୍ଷଣକ ପାଇଁ ସ୍ତବ୍ଧ ପାଲଟିଯାଇ ହଠାତ୍ ଚାବୁକ ଉଠାଇ)

୨ୟ - କିଏ ? କିଏ ତୁମେ ?

ସ୍ଥୂଳ - ମୁଁ ଜୀବ ।

୨ୟ - ନା । (ରଶି ହଲାଇ)ତୁମେ ପ୍ରଭୁ ।

ସ୍ଥୂଳ - (ହୃଦୟଙ୍ଗମ କରି-ଚାବୁକରେ ଶୂନ୍ୟକୁ ଆଘାତ କରି ) ହଁ, ହଁ, ମୁଁ ପ୍ରଭୁ । ମୁଁ ଶାସକ । ମୁଁ ଜୀବ- ମୁଁ ପ୍ରଭୁ ।

୨ୟ - (ଆଗେଇ ଆସି)ତୁମେ ପ୍ରଭୁ । ସାରା ଜଗତର ପ୍ରଭୁ । ସବୁ ଯୁଗର ପ୍ରଭୁ ।

ସ୍ଥୂଳ - ହଁ, ଯୁଗ ଯୁଗର ପ୍ରଭୁ । ସବୁ ଯୁଗର ଶାସକ ।

୨ୟ - ସତ୍ୟ ଯୁଗରେ ତୁମେ...

ସ୍ଥୂଳ - ଶଂଖାସୁର. ହିରଣ୍ୟାକ୍ଷ...ହିରଣ୍ୟକାଶ୍ୟପ ।

୨ୟ - ତ୍ରେତୟାରେ... ?

ସ୍ଥୁଳ - ଦଶାନନ,ବିଂଶବାହୁ ରାବଣ ମୁଁ ...କୁମ୍ଭକର୍ଣ୍ଣ...ଆଉ ବିଭୀଷଣ । ସ୍ୱର୍ଣ୍ଣମୟୀ ଲଙ୍କା ମୋର ଚିର କବଳିତ ।

୨ୟ - ଦ୍ୱାପର ଯୁଗରେ ପୁଣି...

ସ୍ଥୁଳ- କଂସ ମୁଁ, ବକା.... ଷଣ୍ଡା.....ଶକଟା.. ..ମୋ ଅନୁଚରଗଣ । ମହାମାନୀ ଦୁର୍ଯ୍ୟୋଧନ । ଶତଭ୍ରାତା ଥିଲେ ମୋର । ଥିଲେ କୃପ, ଶଲ୍ୟ, ଦ୍ରୋଣ । କରିନି ଭୃକ୍ଷେପ କାରେ ନୋଇଁ ନାହିଁ ମଥା ।

୨ୟ - ଆଉ... ?

ସ୍ଥୁଳ - ପ୍ରଥମ ବିଶ୍ୱଯୁଦ୍ଧରେ ମୁଁ ବିଶ୍ମାର୍କ । ପୁଣି ହିଟଲର ...ମୋସୋଲିନି ...

୨ୟ - (ହସି ଉଠିଛି ଖୁବ୍ ଜୋରରେ) ପ୍ରଭୁ ତୁମେ । ଯୁଗେ ଯଗେ ତୁମେ, ତୁମେ ଶାସନର ଦଣ୍ଡଧାରୀ .... ।

ସ୍ଥୁଳ - (ହସି ଉଠିଚି)

୨ୟ - ପ୍ରଭୁ ତୁମେ ...

ସ୍ଥୁଳ - ମହାପ୍ରଭୁ ।

୨ୟ - ଈଶ ତୁମେ ।

ସ୍ଥୁଳ - ଈଶ୍ୱର ମୁଁ ।

(୨ୟ ହସି ହସି ଫେରିଯାଇଛି । ସ୍ଥୁଳ; ଈଶ ମୁଁ, ଈଶ୍ୱର ମୁଁ । ପ୍ରଭୁ ମୁଁ କହି କହି ଚାବୁକ ମାରୁ ମାରୁ ନାଚି ଉଠିଛି । ଏତିକିବେଳେ ୩ୟ ସ୍ଥାନ ଆଲୋକିତ ହୋଇଛି । ୩ୟ ଚରିତ୍ର ଆସ୍ତେ ଆସ୍ତେ ରଶି ହଲାଇବାକୁ ଆରମ୍ଭ କରିଛି । ସ୍ଥୁଳର ଉତ୍ତେଜନା ଆସ୍ତେ ଆସ୍ତେ କମି ଯାଇଛି ସେ ଚାବୁକ ରଖି ଚାହିଁଛି ୩ୟକୁ)

୩ୟ - ଜ୍ଞାନୀ ତୁମେ । ନିରର୍ଥକ ଉନ୍ମାଦନା ବଶରୁ ନିଜକୁ ମୁକୁଳିତ କର । (ଆଗେଇ ଆସିଚି)

ସ୍ଥୁଳ - (କ୍ରମେ ସ୍ଥିର ହୋଇ ବହି ଉପରେ ଦୃଷ୍ଟି ଦେଇଛି) ଜାଣେ ବନ୍ଧୁ, ଜାଣେ

ମୁଁ

ଶାୟ - ଗୁଣର ଆଦର ଆଉ ପାଣ୍ଡିତ୍ୟର ପ୍ରାଧାନ୍ୟ ସର୍ବଦା,ସବୁକାଳେ ଶ୍ରେୟ ହୋଇ ରହିଛି । ରହିବ ।

ସ୍ଥୁଳ - ଆପଣ ମୋତେ ଚିହ୍ନନ୍ତି ତାହେଲେ ?

ଶାୟ - ନିଶ୍ଚୟ । ଯେ ଜ୍ଞାନୀ ତାଙ୍କୁ ନଚିହ୍ନେ କିଏ ?

ସ୍ଥୁଳ - ପ୍ରକୃତିର ବହୁ ତଥ୍ୟ ମୁଁ ଆବିଷ୍କାର କରିଛି । ଜୀବନର ସ୍ଥିତି ... ଗତି...ଆଉ ଲୟ ସମ୍ପର୍କରେ ଜ୍ଞାନ ଅଛି ମୋର ।

ଶାୟ - ଆପଣ ମହାଜ୍ଞାନୀ । ଆପଣ ସମସ୍ତ ବିଦ୍ୟାର ଅଧିକାରୀ । ଆପଣ ସମସ୍ତଙ୍କ ମାର୍ଗ ପ୍ରଦର୍ଶକ । ଆପଣଙ୍କ ପୂଜା .....

ସ୍ଥୁଳ - ପ୍ରଶଂସା ଅବାଞ୍ଛନୀୟ ।

ଶାୟ - କିନ୍ତୁ ବିଦ୍ୱାନ ସର୍ବତ୍ର ପୂଜ୍ୟତେ ।

ସ୍ଥୁଳ - ନମ୍ରତା ମୋର ଭୂଷଣ ।

ଶାୟ - ଆପଣ ନମସ୍ୟ । ଆପଣ...

ସ୍ଥୁଳ- ଗ୍ରହଣଶୀଳତାର ଅଭିବୃଦ୍ଧି ହେଉ । ଏହା ହିଁ କାମ୍ୟ ।

ଶାୟ - ବିଦ୍ୟା ତାର ପରିବେଶ ନିଜେ ସୃଷ୍ଟି କରିବ ।

ସ୍ଥୁଳ - ତଥାପି, ପ୍ରସ୍ତୁତି ପାଇଁ ପରିବେଶ ଆବଶ୍ୟକ ।

ଶାୟ - ଧନ୍ୟ, ଧନ୍ୟ ଆପଣ । ଧନ୍ୟ ଆପଣଙ୍କ ଜ୍ଞାନର ମହିମା ।

ସ୍ଥୁଳ - ଧନ୍ୟବାଦ ।

(ଶାୟ ଧୀରେ ଧୀରେ ଫେରିଯାଇଛି )

(ସ୍ଥୁଳ ବହିରେ ଗଭୀର ମନୋନିବେଶ କରିଥିବା ବେଳେ ୪ର୍ଥ ଆସନ ଆଲୋକିତ ହୋଇଛି । ୪ର୍ଥ ଘଣ୍ଟି ହଲାଇବାରେ ସ୍ଥୁଳର ବ୍ୟାଘାତ ହୋଇଛି। ସେ ବହି ବନ୍ଦ କରି ଚିନ୍ତାଶୀଳ ହୋଇପଡିଛି । ୪ର୍ଥ ଆଗେଇ ଆସି)

୪ର୍ଥ - କଣ ଜ୍ଞାନବୀର ? ସମସ୍ତ ଜ୍ଞାନର ଅଧିକାରୀ ହୋଇ ମଧ୍ୟ ଏ ଚିନ୍ତା, ଏ ବିବ୍ରତତା... ?

ସ୍ଥୁଳ - (ତାକୁ ଚାହିଁ) ଆପଣ ? ଆପଣ କଣ ଚାହାନ୍ତି ?

୪ର୍ଥ - (ହସି)ଆପଣ କଣ ଚାହିଁବା ଉଚିତ ?

ସ୍ଥୁଳ - ବୁଝି ପାରିଲିନି ।

୪ର୍ଥ - ବୁଝି ପାରିଲନି ? ଗତି ରହିତ ବିଦ୍ୟା, ପ୍ରଗତି ରହିତ ଜ୍ଞାନ , ସ୍ଥାଣୁ ପ୍ରାୟ ନିରର୍ଥକ..ନିଷ୍ପ୍ରୟୋଜନ ।

ସ୍ଥୁଳ - ମୁଁ ହୁଏତ ତା ଜାଣେ । ହେଲେ ....।

୪ର୍ଥ - ଅଭିଳାଷ ନଥିଲେ ପ୍ରଗତି ହୁଏତ ସମ୍ଭବ ନୁହେଁ ।

ସ୍ଥୁଳ - ଶାରୀରିକ କ୍ଷମତା, ପ୍ରଭୁତ୍ୱର ଉନ୍ମାଦନା , ବିଦ୍ୟାର ନମ୍ରତା ... ?

୪ର୍ଥ - ଅସମ୍ପୂର୍ଣ୍ଣ । ଅଭିଳାଷ ନଥିଲେ ସବୁ ଅସମ୍ପୂର୍ଣ୍ଣ ।

ସ୍ଥୁଳ - (ତୂରୀ ଉପରେ ହାତ ରଖି ) ତା ହେଲେ ଏ କଣ .. ?

୪ର୍ଥ - ହଁ ବଜାଅ । ତାକୁ ବଜାଅ । ତାରି ସ୍ୱର ତରଙ୍ଗରେ ଉତ୍ଥାନ ଆଣି ଦେବ ବ୍ୟୁତ୍ଥାନର ଭାବନା । ତୁମେ ପୂର୍ଣ୍ଣ ହେବ । ବଜାଅ ....

ସ୍ଥୁଳ- (ତୂରୀ ବଜାଇବାକୁ ଆରମ୍ଭ କରିଛି)

୪ର୍ଥ - ଆହୁରି, ଆହୁରି, ଆହୁରି ବଜାଅ....
(ନିଜ ସ୍ଥାନକୁ ଫେରିଯିବା ଓ ମଞ୍ଚ ଅନ୍ଧକାର)

ପରଦା

## ଗତି-୩

(ଗତି ଏକର ମଞ୍ଚସଜା । ଭୀମବାବୁଙ୍କର ପୂର୍ବୋକ୍ତ କୋଠରୀ । ଭୀମବାବୁ ସଯ୍ୟାଶାୟୀ । ଜ୍ୟୋତି ଔଷଧ ଦେଇ ପାଣି ଦେଇଛି । ଧୀରେଧୀରେ ଭୀମବାବୁ ନିସ୍ତେଜ ହୋଇପଡିଛନ୍ତି । ଝଡବେଗରେ ପ୍ରବେଶ କରିଛନ୍ତି ସମ୍ରାଟ । ଜ୍ୟୋତି ପୂର୍ବ ପରି ପାଟିରେ ଆଙ୍ଗୁଠି ଦେଇ ଚୁପ୍ କରି ରହିବାକୁ ଇଙ୍ଗିତ ଦେଇଛି )

ସମ୍ରାଟ - (ଅବସ୍ଥା ଉପରେ ଆଖି ବୁଲାଇ) What happened?

ଜ୍ୟୋତି - ଓଃ, ଆପଣ ଅନେକ ଦିନ ହେଲା ସହରରେ ନଥିଲେ ।

ସମ୍ରାଟ - ହଁ ଠିକ୍ । ବର୍ତ୍ତମାନ ସିଧା ଏରୋଡ୍ରମରୁ ଆସୁଛି ।

ଜ୍ୟୋତି - ସାର୍ ଅସୁସ୍ଥ ।

ସମ୍ରାଟ - ଅସୁସ୍ଥ... ମାନେ... ?

ଜ୍ୟୋତି - ସୁସ୍ଥ ନାହାନ୍ତି । Seriousliy ill.

ସମ୍ରାଟ - (ବିବ୍ରତ ହୋଇଉଠି) ତେବେ... ?

ଜ୍ୟୋତି - ଆପଣ ବ୍ୟସ୍ତ ଜଣାଯାଉଛନ୍ତି ଯେ ... ?

ସମ୍ରାଟ - ଭୀମବାବୁଙ୍କ ସହ.... ।

ଜ୍ୟୋତି - କଥବାର୍ତ୍ତା କରିବା ସମ୍ଭବ ନୁହେଁ ।

ସମ୍ରାଟ - But, it is very important.

ଜ୍ୟୋତି - ଅସମ୍ଭବ । ତାଙ୍କୁ ବର୍ତ୍ତମାନ ଗଭୀର ନିଦ୍ରାରେ ....

ସମ୍ରାଟ - ନିଦ୍ରାରେ....କଣ.... ?

ଜ୍ୟୋତି - ଶୁଆଇ ଦିଆ ଯାଇଛି ଔଷଧ ଖୋଇ ।

ସମ୍ରାଟ - ଅସମ୍ଭବ ।

ଜ୍ୟୋତି - ତାଙ୍କର ବର୍ତ୍ତମାନ କରାଯିବ Physical exercise ।

ସମ୍ରାଟ - ତେବେ ତ ....

ଜ୍ୟୋତି - ନା, ସାର୍ । ଭୁଲ ବୁଝିଲେ । ସେନ୍ସରେ ଥାଇ ତାଙ୍କର ଏକ୍ସରସାଇଜ କରିବା ସମ୍ଭବ ହେଉନି । ତେଣୁ ତାଙ୍କୁ ନିଦରେ ଶୁଆଇ ....

ସମ୍ରାଟ - ଓଃ କି ମୁସ୍କିଲ । ମୋତେ ତେଣେ ସଂଗେ ସଂଗେ ଫେରିଯିବାକୁ ହେବ । ସେ ମୋ Cable ପାଇଥିବେ ।

ଜ୍ୟୋତି - ନା, ମୁଁ ପାଇଛି ।

ସମ୍ରାଟ - ତା ମାନେ.... ସେ ଜାଣନ୍ତିନି ?

ଜ୍ୟୋତି - ନା' ଜାଣିବାର ଉପାୟ ନାହିଁ ।

ସମ୍ରାଟ - ତା ପରେ ... ?

ଜ୍ୟୋତି - ଜଣାଇବାର ଆବଶ୍ୟକତା ମଧ୍ୟ ନାହିଁ ।

ସମ୍ରାଟ - ମାନେ ?

ଜ୍ୟୋତି - ସେ ଆଉ କୌଣସି କାର୍ଯ୍ୟ କିମ୍ବା ଅନୁଷ୍ଠାନକୁ ସାହାଯ୍ୟ କରିବା ସମ୍ଭବ ନୁହେଁ ।

ସମ୍ରାଟ - ଅସମ୍ଭବ । ତା ହେଲେ ତ ....

ଜ୍ୟୋତି - ଯାହା ହେଲେ ବି ଆଉ ସମ୍ଭବ ନୁହେଁ । ସାର୍‌ଙ୍କ ବ୍ୟାଙ୍କ ବାଲାନ୍ସ ବୋଲି କିଛି ନାହିଁ ।

ସମ୍ରାଟ - ନା, ତା କିପରି ହେବ । ମିନିମମ୍ ଦଶଲକ୍ଷ ଟଙ୍କା ନଦେଲେ ..ମୁଁ - ମୁଁ... ନା, ମୋତେ ଯେମିତି ହେଲେ ଟଙ୍କା ନେଇ ଫେରିବାକୁ ହେବ । ତାଙ୍କର ସେନ୍‌ସ କେତେବେଳେ ....

ଜ୍ୟୋତି - (ହସିଉଠି) ଦଶଲକ୍ଷ ? ଦଶ ଟଙ୍କା ବି ମିଳିବାର ଠିକ୍ ନାହିଁ ।

ସମ୍ରାଟ - (ବିବ୍ରତ ହୋଇଉଠିଛି ଓ କ୍ଷିପ୍ର ବେଗରେ ଯାଇ ଭୀମବାବୁଙ୍କୁ ହଲାଇ ଦେଇଛି)

ଜ୍ୟୋତି - (ଧାଇଁ ଯାଇ ସମ୍ରାଟଙ୍କ ହାତ ଧରି ନେଇଛି) No sir, no.

ସମ୍ରାଟ - (ଜ୍ୟୋତିକୁ ପେଲି ଦେଇ)You, get the cheque book . ତୁ ଯାଇ ବହି ଆଣ ।

ଜ୍ୟୋତି - (ପଡି ଯାଉ ଯାଉ ନିଜକୁ ସମ୍ଭାଳି ନେଇ) ଆପଣ. ..... ଆପଣ କଣ ପାଗଳ ହୋଇଗଲେ ?

ସମ୍ରାଟ - Exactly ମୁଁ ପାଗଳ ହୋଇଯିବି । ତୁ ଚେକ୍ ବହି ଆଣ ।
(ଜୋର କରି ଭୀମବାବୁଙ୍କୁ ବସେଇବାକୁ ଚେଷ୍ଟା କରିଛି)

ଜ୍ୟୋତି - ଚେକ୍ ବହି ? ଅନେକ ଦିନୁ ସରିଗଲାଣି । ଯିଏ ନିଶ୍ଚିତ ଭାବେ ମରିବେ, ତାଙ୍କୁ ଆପଣ ମର୍ଡର କରିବେ କାହିଁକି ?

(ଭୀମବାବୁ ଅସ୍ପଷ୍ଟ ଚିତ୍କାର କରି ଆଖି ଖୋଲିଛନ୍ତି)

ସମ୍ରାଟ - (ଜ୍ୟୋତିକୁ) ଠିକ୍ କହୁଛୁତ ? ମୁଁ ତାଙ୍କ ବ୍ୟାଙ୍କ ବାଲାନ୍‌ସ ଚେକ୍ କରି ଦେଖିବି ।

ଜ୍ୟୋତି - (ଭୀମବାବୁଙ୍କୁ ସମ୍ଭାଳିବାକୁ ଚେଷ୍ଟା କରି ) ଆପଣଙ୍କ ଖୁସି । ଆପଣ ଯାହା କରନ୍ତୁ , ହେଲେ ସାର୍‌ଙ୍କୁ ଡିଷ୍ଟର୍ବ କରିବାକୁ ମୁଁ ଦେବିନି ।

ସମ୍ରାଟ' - ମୋର Entire command retreat କରୁଛି । ମୁଁ ଯଦି ଠିକ୍ ସମୟରେ ନପହଞ୍ଚେ, ହୁଏତ କେହି ଜଣେବି ଫେରିବନି ।

ଜ୍ୟୋତି - ସାର୍‌ଙ୍କୁ ଯଦି ଠିକ୍ ସମୟରେ ଔଷଧ ଦିଆ ନଯାଏ, Treatment କରା ଯାଇନପାରେ. ସେ ଯେ କୌଣସି ମୁହୂର୍ତ୍ତରେ .....

ସମ୍ରାଟ - Let him die.But I must have money.

ଭୀମ - (ବିକଳରେ) କିଏ ? ଡାକ୍ତର ? ମୋତେ ବଞ୍ଚାଅ ଡାକ୍ତର । ମୋତେ....

ଜ୍ୟୋତି - ଡାକ୍ତର ପହଞ୍ଚିବେ ସାର୍ । ଆପଣ ବ୍ୟସ୍ତ ହୁଅନ୍ତୁନି । ଆପଣ ରେଷ୍ଟ ନିଅନ୍ତୁ।

ସମ୍ରାଟ - ଭୀମବାବୁ....ଭୀମବାବୁ ମୁଁ ସମ୍ରାଟ ସିଂ ।

ଭୀମ - ଡାକ୍ତର କାହାନ୍ତି ? ମୁଁ ବଞ୍ଚିବାକୁ ଚାହେଁ । ଓଃ....

ସମ୍ରାଟ - ମୋ କମାଣ୍ଡ ବି ବଞ୍ଚି ରହିବା ଦରକାର । ମୁଁ ସଂଗେ ସଂଗେ ନଫେରିଲେ.. (ଭୀମବାବୁ ପୁଣି ଢଳିପଡିଲେ )

ଅଭିଲାଷ- (ପ୍ରବେଶକରିଛି)ଜୁରିଚରୁ ଡାକ୍ତର ଆସିବେ । ହେଲେ କେମିତି, କେମିତି ଆସିବେ ? ∴ ସ୍କୁଟର ....ମୋଟରସାଇକେଲ୍ .... କାର .... ପ୍ଲେନ.... ଜେଟ୍‌ପ୍ଲେନ.....ରକେଟ୍.....

ଜ୍ୟୋତି - ଆପଣ ପୁଣି ଆସିଲେ ?

ଅଭିଲାଷ - ଗୋଟାଏ ସେକେଣ୍ଡରେ ଏକଶହ ଚଉରାଶି ମାଇଲ , ଆଲୋକର ଗତି ସହ ଟକ୍କର ଦେଇ ସେ ଯେଉଁ Space craft.

ଜ୍ୟୋତି - ଆପଣ ଚୁପ୍ ରୁହନ୍ତୁ ।

ସମ୍ରାଟ - କିଏ ଆସିବେ ଜୁରିଚରୁ ?

ଜ୍ୟୋତି - Dr. Godded ଆସିବାର ଅଛି ।

ଅଭିଲାଷ - ସୁଇଜରଲ୍ୟାଣ୍ଡରୁ ଏଠିକି ଗୋଟାଏ ସେକେଣ୍ଡ ବି ଲାଗିବନି ।

ଜ୍ୟୋତି - ଆପଣମାନେ ଗଲେ ଏଠୁଁ ।

ସମ୍ରାଟ - (ରାଗିଯାଇ)ଟଙ୍କା ନନେଇ ମୁଁ ଏଠୁଁ ଯାଉନି । ଯିବି ବି କେମିତି ?

ଅଭିଲାଷ - ଟଙ୍କା ? ହଁ ଟଙ୍କା, ସବୁ ସେଇ ଟଙ୍କା । ସାଇକେଲ ପାଇଁ ଟଙ୍କା.....କାର ପାଇଁ ତାଠୁ ବେଶୀ....ରକେଟ ପାଇଁ ତାଠୁ ବେଶୀ...ତାଠୁ ବେଶୀ.... ଆହୁରି.... ଆହୁରି ବେଶୀ.....

ସମ୍ରାଟ - (ଅନୁରୋଧ କରି) ଦେଖ, ମୁଁ ଯଦି ଟଙ୍କା ନେଇ ଠିକ୍ ସମୟରେ ଫେରି ନଯାଏ .....

ଜ୍ୟୋତି - ଆପଣ ଅଯଥା ଏଠି ଡେରି କରୁଛନ୍ତି । ବରଂ ଅନ୍ୟ କେଉଁଠି ଚେଷ୍ଟା କଲେ ହୁଏତ ....

ସମ୍ରାଟ - ନା' ସମ୍ଭବ ନୁହେଁ । ବେଳ ବି ନାହିଁ ।

ଅଭିଳାଷ - ବେଳ ... ? ବେଳ ଆଉ କାହାର ନାହିଁ । ଦରକାର ବି ନାହିଁ । ଗୋଟାଏ ସେକେଣ୍ଡରେ ସାରା ପୃଥିବୀ ବୁଲି ହେବ । ଏତେ ବେଳ ହେବ କଣ ?

ଜ୍ଞାନ - (ପ୍ରବେଶ କରି ପରିସ୍ଥିତି ଲକ୍ଷ୍ୟ କରି) ସାର୍‌ଙ୍କ ବ୍ୟାୟାମ ବେଳ ବୋଧେ ଗଡିଗଲାଣି, ଜ୍ୟୋତି ?

ଜ୍ୟୋତ - ହଁ, କିନ୍ତୁ Full unconsious ହେବା ପୂର୍ବରୁ ଏମାନେ ଆସି .....

ଜ୍ଞାନ - (ସମ୍ରାଟଙ୍କୁ) ଆପଣ କଣ ?

ସମ୍ରାଟ - ଆପଣ ପ୍ରଫେସର....

ଜ୍ଞାନ - ହଁ, ଜ୍ଞାନ ରଞ୍ଜନ ।

ସମ୍ରାଟ - ଆପଣ କଣ ଭୀମବାବୁଙ୍କ....

ଜ୍ଞାନ - ସେ ଆମ ଇନଷ୍ଟିଚ୍ୟୁଟର ପ୍ୟାଟ୍ରନ ଇନ୍ ଚିଫ୍ । ପ୍ରକୃତରେ ହର୍ତ୍ତା କର୍ତ୍ତା ।

ସମ୍ରାଟ - କିନ୍ତୁ ଏବେ ... ?

ଜ୍ଞାନ - ସେ ତ ଏକମାତ୍ର Doner' ତାଙ୍କ ବେରାମ ପରଠୁ ଆମ ଅନୁଷ୍ଠାନ.... ଅଚଳ ।

ସମ୍ରାଟ - ସେ ଯଦି ଭଲ ନହୁଅନ୍ତି ?

ଅଭିଳାଷ - ଖୁବ୍ ଭଲ ହେବ ।

ସମ୍ରାଟ - You get out . ଚାଲିଯାଅ ତୁମେ ।

ଅଭିଳାଷ - (ଡରିଯାଇ) ଆଚ୍ଛା, ଆଚ୍ଛା ମୁଁ ଯାଉଛି ।
(ଚାଲିଯିବାକୁ ଉଦ୍ୟତ ହୋଇଛି ) ହେଲେ ମୁଁ ଯିବି କେମିତି ? ମୋର ରକେଟ୍ .... ?

ଜ୍ୟୋତି - (ହସି) ସାଇକେଲ ବି ନାହିଁ ? ବିଚାରା ।

ଭୀମ - (ହଠାତ୍ ଉଠିପଡି) ଡାକ୍ତର, ଡାକ୍ତର, ମୋତେ ବଞ୍ଚାଅ ।ମୁଁ ବଞ୍ଚିବାକୁ ଚାହେଁ ମୁଁ ବଞ୍ଚିବି ... ।

ସମ୍ରାଟ - ମୋର ଦଶଲକ୍ଷ ଟଙ୍କାର ଚେକ୍ ଦରକାର ଭୀମବାବୁ ।

ଭୀମ - ମାତ୍ର ଦଶଲକ୍ଷ ?

ସମ୍ରାଟ - ନହେଲେ ଆମ ଆଗୁଆ ବାହିନୀ ଶତ୍ରୁର ଗୁଳି ମାଡ଼ରେ ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହୋଇଯିବ ।

ଜ୍ଞାନ - (ଭୀମବାବୁଙ୍କୁ ଧରି ନେଇ ) ଆପଣ ବଞ୍ଚିବେ ସାର୍ । ଆପଣ ବଞ୍ଚିବେ । ନହେଲେ ଆମ ଅନୁଷ୍ଠାନ ବଞ୍ଚିବ କେମିତି ? ଆପଣ ବଞ୍ଚିବେ । ଅନ୍ତତଃ ଆମମାନଙ୍କ ପାଇଁ..... ।

ଭୀମ - (ଯନ୍ତ୍ରଣା କ୍ଲିଷ୍ଟ ହୋଇ ପଡିଯାଇଛନ୍ତି)

ଜ୍ୟୋତି - (ଧରି ନେଉ ନେଉ) ସାର୍....ସାର୍ ...(ଆତଙ୍କିତ ହୋଇଉଠି) ଏଥର ଭଲା ଆପଣମାନେ ଯାଆନ୍ତୁ । ସାର୍.. ସାର୍ ଆଉ ନାହାନ୍ତି । (କାନ୍ଦିଉଠିଛି)

ସମସ୍ତେ - ନାହାନ୍ତି ... ତାହେଲେ ତ... ?

ଜ୍ୟୋତି- (ନିଜକୁ ସମ୍ଭାଳି ନେଇ ଗମ୍ଭୀର ଭାବରେ) ଆପଣମାନେ ସମସ୍ତେ ରୁହନ୍ତୁ। ଅଧୀର ହୁଅନ୍ତୁ ନାହିଁ। ମୁଁ ସାର୍‌ଙ୍କ ଅବଶିଷ୍ଟାଂଶରୁ ଯଥା ସମ୍ଭବ ଆପଣମାନଙ୍କୁ ସାହାଯ୍ୟ କରିବି । ଆପଣମାନଙ୍କ ଶେଷ ଅଭିଳାଷ.... ?

ସମସ୍ତେ - (ଆଶ୍ଚର୍ଯ୍ୟ ଓ ଆଶାର ସହ) ତୁମେ .... ?

ଜ୍ୟୋତି - ହଁ, ମୁଁ । କାରଣ ମୁଁ ତ ଏକମାତ୍ର ଉତ୍ତରାଧିକାରିଣୀ ।

ସମ୍ରାଟ - Thank God ଦେଖ, ମୋର ମାତ୍ର ଦଶଲକ୍ଷ ।

ଜ୍ୟୋତି - (ସ୍ମିତ ହାସ୍ୟ) ତେବେ ତ ଆପଣଙ୍କୁ ଅପେକ୍ଷା କରିବାକୁ ପଡିବ । ସମସ୍ତଙ୍କ ପରେ ଯାଇ ....।

ସମ୍ରାଟ - ମୋର କିନ୍ତୁ ସମସ୍ତଙ୍କଠୁ ବେଶି ।

ଜ୍ୟୋତି - ଆପଣଙ୍କ ଇଚ୍ଛା । ଅପେକ୍ଷା କରିବାକୁ ପଡିବ ।

ସମ୍ରାଟ - (ଦୀର୍ଘଶ୍ୱାସ ନେଇ) Better late than never.

ଜ୍ୟୋତି - ଆସ ଅଭିଳାଷ, ତୁମେ ପ୍ରଥମେ । ତୁମର ଯାନ ଦରକାର ନା.... (ଭୀମବାବୁଙ୍କ ଖଟତଳୁ ତାଙ୍କର ଯୋତା ଦୁଇଟିକୁ ଉଠାଇ ଆଣି ଅଭିଳାଷକୁ ବଢ଼ାଇ ଦେଇ ) ନିଅ । ସାର୍‌ଙ୍କର ଏ ପାଦୁକା ତୁମକୁ ଚିରଦିନ ଅଗ୍ରଗତିର ପ୍ରେରଣା ଦେଉ । ଏହା ହିଁ କାମନା, ଏତିକିରେ ତୁମର ସେ ଅସୀମ ଅଭିଳାଷ ତୃପ୍ତ ହେଉ ।

ଅଭିଳାଷ -(କିଛି ବୁଝିନପାରି ଯୋତା ଦୁଇଟି ଧରି ଧୀରେ ଧୀରେ ଚାଲି ଯାଇଛି)

ଜ୍ୟୋତି - (ପ୍ରଫେସରଙ୍କୁ) ଆପଣ, ବିଦ୍ୱାନ ସାର୍ । ପ୍ରାଚ୍ୟ ପରମ୍ପରାରେ ପାଦୁକା . କେଶ ଓ ଦନ୍ତ ପ୍ରଭୃତି ସାଇତି ରଖି ସ୍ମୃତି ଚାରଣ କରିବାର ତାତ୍ପର୍ଯ୍ୟ ଆପଣ ନିଶ୍ଚୟ ବୁଝନ୍ତି ।

(ଭୀମବାବୁଙ୍କ ମୁଣ୍ଡରୁ କିଛି କେଶ ଆଣି ସଯତ୍ନେ ଗୋଟିଏ ଖାଲି ଔଷଧ ବୋତଲରେ ରଖି ସସମ୍ମାନେ ପ୍ରଫେସରଙ୍କୁ ବଢ଼ାଇ ଦେଇଛି । ) ଆପଣ ଏତିକି ଅବଶିଷ୍ଟ ଗ୍ରହଣ କରି ନିଜ ରିସର୍ଚ୍ଚ ଇନଷ୍ଟିଚ୍ୟୁଟରେ ଏହାର ବିଧି ପୂର୍ବକ ରକ୍ଷଣାବେକ୍ଷଣ କରି ତୃପ୍ତ ହୁଅନ୍ତୁ ..ଆନନ୍ଦ ଲାଭ କରନ୍ତୁ ।

ଜ୍ଞାନ - (କ୍ରୋଧ ଚାପି ରଖି ସେ ବୋତଲକୁ ପକେଟରେ ପୁରାଇ ଦ୍ରୁତ ଗତିରେ ଚାଲିଯାଇଛନ୍ତି )

ସମ୍ରାଟ - What is the farce ? ମୋତେ ତା ହେଲେ କଣ .... ?

ଜ୍ୟୋତି - ଆପଣ ଅତ୍ୟନ୍ତ ବ୍ୟଗ୍ର ଦେଖୁଛି । ସମସ୍ତ ଦିବ୍ୟାସ୍ତ୍ର ଯେତେବେଳେ ଅସଫଳ ହେଲା, ସେତେବେଳେ ଦଧିଚୀଙ୍କ ଅସ୍ଥିରେ ବୃତ୍ରାସୁରର ମୃତ୍ୟୁ ସମ୍ଭବ ହୋଇଥିଲା ସାର ।

(ଭୀମବାବୁଙ୍କ ନଖରୁ କିଛି ଆଣି ଗୋଟାଏ ବୋତଲରେ ରଖି) ଅସ୍ଥି ପାଇବା ପାଇଁ ମୃତାହ କ୍ରିୟା ସମାପନ ପର୍ଯ୍ୟନ୍ତ ଅପେକ୍ଷା କରିବାର ସମୟ ଆପଣଙ୍କର ନାହିଁ । ପ୍ରତିବଦଳରେ, ଆପଣ ଏ ନଖ ଗ୍ରହଣ କରି ତୃପ୍ତ ରହିବା ହୁଅନ୍ତୁ ।

ସମ୍ରାଟ- (ବୋତଲକୁ ଫିଙ୍ଗି ଦେଇ ଚାଲି ଯାଉ ଯାଉ ) You stupid Girl,...How dare .

ଜ୍ୟୋତି -(ଖୁବ୍ ଜୋରରେ ହସି ଉଠିଛି । ଭୀମବାବୁଙ୍କ ପାଖକୁ ଯାଉ ଯାଉ ସେ ହସ କାନ୍ଦରେ ବଦଳିଛି ।) ଦେଖିଲେ, ଦେଖିଲେ ସାର୍ ....କିଏ ?କିଏ ? କିଏ କାହାର ସ୍ମାରକ ... ? ଆପଣ ନା ଏମାନେ ..., ? (କାନ୍ଦି ଉଠିଛି)

(ମଞ୍ଚ ଅନ୍ଧକାର, ପରଦା ପଡିଛି)

## ପରିଣତି

(ପ୍ରସ୍ତୁତିର ମଞ୍ଚସଜା । କେବଳ ୫ମ(ଜ୍ୟୋତି)ର ଆସନ ବ୍ୟତୀତ ଅନ୍ୟ ସମସ୍ତଙ୍କ ଆସନ ଆଲୋକିତ । ମଧ୍ୟାଂଶରେ ସ୍ଥୁଳ ଦଣ୍ଡାୟମାନ । ଅନ୍ୟ ଚାରିଜଣ ନିଜ ନିଜ ରଶି ସାହାଯ୍ୟରେ ତାକୁ ଟାଣି ରଖିଚନ୍ତି । ସ୍ଥୁଳ ଅତ୍ୟନ୍ତ ଯନ୍ତ୍ରଣାଗ୍ରସ୍ତ ; ଅନ୍ୟମାନେ ଉତ୍‌କ୍ଷିପ୍ତ । ପ୍ରତ୍ୟେକ ଏକ ସମୟରେ ସ୍ଥୁଳକୁ ନଚେଇବାକୁ ବ୍ୟଗ୍ର । ସ୍ଥୁଳ୍ ଅକ୍ଷମତା ପ୍ରଦର୍ଶନପୂର୍ବକ ଯନ୍ତ୍ରଣା ଜର୍ଜରିତ ହୋଇଉଠୁଥାଏ ।)

୧ମ - ତୁ ଜୀବ ....

ସ୍ଥୁଳ - ହଁ ମୁଁ ଜୀଇଁଛି...ମୁଁ ଜୀଇଁବି...।

୨ୟ - ତୁ ପ୍ରଭୁ ...

ସ୍ଥୁଳ - ହଁ, ମୁଁ ପ୍ରଭୁ । ମୁଁ ହିରଣ୍ୟାକ୍ଷ .... ମୁଁ ଦଶାନନ .... ।

୩ୟ - ତୁ, ଜ୍ଞାନୀ । ତୁ ପଣ୍ଡିତ ।

ସ୍ଥୁଳ - ହଁ, ମୁଁ ବିଶ୍ୱାମିତ୍ର....ମୁଁ ଆଇନଷ୍ଟାଇନ.... ସେକ୍‌ସପିଅର.... ।

୪ର୍ଥ - ତୁମର ଅଭିଳାଷ ଅଛି ।

ସ୍ଥୁଳ - ଉଚ୍ଚାଭିଳାଷ ।

(ସମସ୍ତେ ହସି ଉଠି ଏକ ସମୟରେ ରଶି ହଲାଇଲେ )

୧ମ - ତୁ,ଜୀବ ।

୨ୟ - ତୁ, ପ୍ରଭୁ ।

୩ୟ - ତୁ, ଜ୍ଞାନୀ ।

୪ର୍ଥ - ତୁ, ଅଭିଳାଷୀ ।

(ବହୁବିଧ ସଙ୍ଗୀତ ଭିତରେ ଚାପା କଣ୍ଠରେ ଶୁଭୁଛି ଗୀତ -ତ୍ରିଗୁଣ ରଜୁ ହସ୍ତେ ଧରି, ମୃଗୀ ନଚାଏ ନରହରି )

ସ୍ଥୁଳ - (ଚାବୁକ,ପୁସ୍ତକ ଓ ତୁରୀର ପର୍ଯ୍ୟାୟ କ୍ରମେ ଉପେଯାଗ କରିବାକୁ ଚେଷ୍ଟା କରି କିଛି କରି ପାରୁନି ଓ ଦୁର୍ବଳ ହୋଇ ପଡୁଛି । ) ନା, ନା, ମୁଁ ପାରୁନି । ହଁ ମୁଁ ଜୀବ । ମୁଁ ପାରୁନି .....ପାରୁନି । ମୁଁ....ମୁଁ .....,

(ଯନ୍ତ୍ରଣାଗ୍ରସ୍ତ ହୋଇଉଠିଛି)

ଅନ୍ୟମାନେ - (ଉଚ୍ଚସ୍ୱରରେ ହସିଉଠିଛନ୍ତି) ତୁ ,ତୁ ପାରିବୁ ..... ।

ସ୍ଥୁଳ - (ବିକଳରେ ସମସ୍ତଙ୍କୁ ଚାହିଁ ) କିଏ ...କିଏ ତୁମେମାନେ ? କଣ ଚାହୁଁଛ ତୁମେମାନେ ?

୧ମ - ମୁଁ ଜିଜୀବିଷା ।

୨ୟ - ମୁଁ ଈଶତ୍ୱ । ମୁଁ ଜିଗୀଷା ।

୩ୟ - ମୁଁ ଜିଜ୍ଞାସା ।

୪ର୍ଥ - ମୁଁ ବ୍ୟୁତ୍ପାନ ।

ସ୍ଥୁଳ - (ଚିତ୍କାର କରିଛି) ମୁଁ...ମୁଁ କିଏ ?

ସମସ୍ତେ - (ହସି ଉଠିଛନ୍ତି)

୧ମ - ତୁ ଜୀବ ।

୨ୟ - ତୁ ଈଶ ।

୩ୟ - ତୁ ଜିଜ୍ଞାସୁ ।

୪ର୍ଥ - ତୁ ଅଭିଳାଷୀ ।

(ସମସ୍ତେ ପୁଣି ନଚାଇବାକୁ ଆରମ୍ଭ କରିଛନ୍ତି ଓ ସ୍ଥୁଳ ମ୍ରିୟମାଣ ହୋଇଉଠି)

ସ୍ଥୁଳ - ମୁଁ ଜୀବ .... ମୁଁ ହିଟଲର ...ମୁଁ ଆଇନଷ୍ଟାଇନ ..(କଥା କହିପାରିନି ।)

ଅନ୍ୟମାନେ -ହଁ.... ହଁ...କୁହ ...କୁହ... ।

(ସ୍ଥୁଳ ଅବଶ ହୋଇ ପଡିଯାଇଛି ଓ ଅନ୍ୟମାନେ ତା ପାଖକୁ ଆସି ରଶି ମାଧ୍ୟମରେ ତାକୁ ଟାଣି ଉଠାଇଛନ୍ତି)

ସମସ୍ତେ - କୁହ....କୁହ...।

ସ୍ଥୁଳ - (ଅତ୍ୟନ୍ତ କଷ୍ଟରେ) ମୁଁ ମୃତ । ମୁଁ ପରାଜିତ ।

ଅନ୍ୟମାନେ - ନା...ନା...

୧ମ - ନା, ତୁ ଜୀବ ।

୨ୟ - ତୁ ପ୍ରଭୁ ।

୩ୟ - ତୁ ......।

ସ୍ଥୁଳ - ନା, ମୁଁ ମୃତ...ମୁଁ ପରାଜିତ .... ।

୧ମ - ମିଛ । ତୁ ଜୀଇଁଛୁ ।

ସ୍ଥୁଳ - ନା, ମୁଁ ମୃତ । ମୋତେ ବଞ୍ଚାଅ ।

୧ମ - ହଁ.... ହଁ ତୁ ଜୀଇଁଛୁ ।

ଅନ୍ୟମାନେ - ହଁ....ହଁ ।

ସ୍ଥୁଳ - (ସମସ୍ତଙ୍କୁ ଆଡ଼େଇ ଦେବାକୁ ଚେଷ୍ଟା କରି କଷ୍ଟରେ ଉପରକୁ ହାତ ଉଠାଇଛି) ମୁଁ କିଏ .....କିଏ ମୁଁ ... ?(ଜ୍ୟୋତି ଆଡ଼କୁ ନିରୀକ୍ଷଣ କରି ) କିଏ... ? କିଏ ସେଠି ?

ଜ୍ୟୋତି - (ନିରୁତ୍ତର)

ଅନ୍ୟମାନେ - ଆମକୁ ଦେଖ । ଆମେ କହୁଛୁ....।

ସ୍ଥୁଳ - ( ସେମାନଙ୍କ କବଳରୁ ମୁକ୍ତ ହୋଇ ଜ୍ୟୋତି ଆଡ଼କୁ ଆଗେଇବାକୁ ଚେଷ୍ଟା କରିଛି ଓ ଅନ୍ୟମାନେ ତାକୁ ଟାଣି ଧରିବାରୁ ଯାଇ ନପାରି ) କିଏ ? କିଏ ତୁମେ ? ମୁଁ ତୁମ ନିକଟକୁ ଯାଇପାରୁନି । ତୁମେ ଆସ । ମୋତେ ବଞ୍ଚାଅ..।

ଜ୍ୟୋତି - (ଧୀରେ ଧୀରେ ଆଲୋକ ଶିଖା ଉଠାଇ ଠିଆ ହୋଇ) କିଏ ତୁମେ ? କାହାକୁ ଖୋଜୁଛ ?

ସ୍ଥୁଳ - ମୁଁ (ତାକୁ କଥା କୁହାଇ ନଦେଇ)

୧ମ - ସେ ଜୀବ ।

୨ୟ - ସେ ପ୍ରଭୁ ।

ସ୍ଥୁଳ- (ଚିତ୍କାର କରି) ନା, ନା ମୁଁ କିଛି ନୁହେଁ ....ମୁଁ...ମୁଁ...।

ଜ୍ୟୋତି - ମୁଁ ଜ୍ୟୋତି । ଏବେ ବି ମୋ ଆଲୋକ.....।

ଅନ୍ୟମାନେ - ନା, ଅସମ୍ଭବ । ଆମେମାନେ ଥାଉ ଥାଉ....

ସ୍ଥୁଳ - ତୁମର ସେ ଆଲୋକ.. ? ସେ ଆଲୋକ ମୋତେ ବାଟ ଦେଖାଇ ପାରିବ ?

ଜ୍ୟୋତି - ତୁମେ ଆସି ପାରିବ ? ଅନୁସରଣ କରିପାରିବ ?

ସ୍ଥୁଳ - (ଆଗେଇ ଯିବାକୁ ଉଦ୍ୟତ ଓ ଅନ୍ୟମାନେ ଟାଣି ରଖିବା ) ମୁଁ ପାରୁନି । ଏମାନେ ମୋତେ ...

ଜ୍ୟୋତି - (ଧୀରେ ଧୀରେ ଆଲୋକ ଶିଖା ସହ ଆଗେଇ ଆସିଛି ଓ ଅନ୍ୟମାନେ ନିଜ ନିଜ ଆସନକୁ ଚାଲି ଯାଇଛନ୍ତି) କେଉଁମାନେ ତୁମକୁ ..... ?

ସ୍ଥୁଳ - (ନିରୀକ୍ଷଣ କରି) କାହାନ୍ତି, କାହାନ୍ତି ସେମାନେ .... ? (ବନ୍ଧା ଯାଇଥିବା ରଶିକୁ ଦେଖି) ଏଇ ଦେଖ ସେମାନେ ମୋତେ ବାନ୍ଧି ରଖିଛନ୍ତି ।

ଜ୍ୟୋତି - (ହସି) ବାନ୍ଧି ରଖିଛନ୍ତି ? ସେମାନେ ତୁମର ପ୍ରିୟ । ସେମାନେ ତୁମର ବନ୍ଧୁ । କିଏ କାହାକୁ ବାନ୍ଧି ରଖିଛି ? ସେମାନେ ତୁମକୁ ନା ତୁମେ ସେମାନଙ୍କୁ ?

ଅନ୍ୟମାନେ -(ହସି ଉଠିଛନ୍ତି)

ସ୍ଥୁଳ - ଶୁଣୁଛ, ଶୁଣୁଛ ସେମାନଙ୍କୁ ?

ଜ୍ୟୋତି - ନା, ମୁଁ କେବଳ ତୁମକୁ ଶୁଣୁଛି । ତୁମକୁ ଦେଖୁଛି । (ପାଟିର ଚିତ୍ରକୁ ଦେଖି) ତୁମେ ଜୀବ । (ଚାବୁକ ଦେଖି) ତୁମେ ଈଶ(ବହି ଦେଖି) ତୁମେ ଜ୍ଞାନୀ (ତୁରୀଦେଖି) ତୁମର ଅଭିଳାଷ ଅସୀମ ।

ସ୍ଥୁଳ - ନା, ତୁମେ ସେ ଗୁଡାକ କାଢ଼ି ନିଅ ମୋଠୁଁ ।

ଜ୍ୟୋତି - କାଢ଼ିନେବି ? ମୁଁ କାଢ଼ି ନେବି କାହିଁକି ?

ସ୍ଥୁଳ - ନା,ନା,ମୁଁ ଫିଙ୍ଗି ଦେବି ସେ ଗୁଡାକ । (ଗୋଟି ଗୋଟି କରି କାଢ଼ିବାକୁ ଚେଷ୍ଟା କଲାବେଳେ ସେ ରଶିଗୁଡ଼ିକ ଟାଣି ହୁଏ ଓ ସେ ଯନ୍ତ୍ରଣାରେ ଚିତ୍କାର କରି ଉଠିଛି) ନା, ନା, ମୁଁ ପାରୁନି । ଓଃ କି ଭୟଙ୍କର ? କି କଠିନ ? କି କଷ୍ଟ ? ମୁଁ ପାରୁନି ମୋତେ ଟିକେ ସାହାଯ୍ୟ କଲେ ....(ବାରମ୍ବାର ଚେଷ୍ଟା କରି ପାରିନି ଓ ଅତ୍ୟନ୍ତ ଯନ୍ତ୍ରଣା ଜର୍ଜରିତ ହୋଇଉଠି ସ୍ଥିର ହୋଇ କ୍ଷଣେ ଠିଆ ହୋଇଛି । ତାପରେ ସମ୍ପୂର୍ଣ୍ଣ ନିରୁପାୟ ପରି ଉପରକୁ ହାତ ଦୁଇ ଉଠାଇ - (ଦ୍ରୌପଦି ବସ୍ତ୍ର ହରଣ ବେଳେ ଦ୍ରୌପଦିଙ୍କ ସମର୍ପଣ ମୁଦ୍ରା - ଧୀରେ କହିଛି) ମୁଁ...ମୁଁ ପାରିବିନି । ମୁଁ ଯେମିତି ଅଛି, ଯାହା ଅଛି, ଯେଉଁଠି ଅଛି, ତୁମେ କଣ ମୋତେ ନେଇ ପାରିବନି ? ମୁଁ ସମ୍ପୂର୍ଣ୍ଣ ଭାବରେ ତୁମର । ତୁମେ ଯେମିତି ଚାହିଁବ, ଯାହା କରିବ..... ।

ଜ୍ୟୋତି - ଠିକ୍ ଅଛି । ମୁଁ ତୁମକୁ ଗ୍ରହଣ କରିବି । କିନ୍ତୁ ଏସବୁ କାଢ଼ିବି ନାହିଁ ।....ମୋ ଉତପ୍ତ ଆଲୋକ ଶିଖାରେ ସେ ସବୁକୁ ଜାଳି ଦେବି ....ଯନ୍ତ୍ରଣା ଆହୁରି ବେଶି ହେବ, ସହି ପାରିବ ?

ସ୍ଥୁଳ - ଯନ୍ତ୍ରଣା.... ?

ଜ୍ୟୋତି - ହଁ ଯନ୍ତ୍ରଣା । ଜ୍ୱଳନ । ଜ୍ୱଳନର ଯନ୍ତ୍ରଣା ।

ସ୍ଥୁଳ - (ନିରବ ରହିବା - ଅନ୍ଧକାର ମଧରେ ଅନ୍ୟମାନେ ହସି ଉଠିବା)

ଜ୍ୟୋତି - ଉତ୍ତର ଦିଅ । ପ୍ରସ୍ତୁତ ତ ?

ସ୍ଥୁଳ - ମୁଁ ପ୍ରସ୍ତୁତ । ତୁମେ ତୁମର ଯାହା ଇଚ୍ଛା, ତାହା କର ।

ଜ୍ୟୋତି - ବେଶ୍ ,ତାହେଲେ ଧର ଏ ଶିଖାକୁ (ବଢ଼ାଇଦେବା)

ସ୍ଥୁଳ - (ଆଲୋକ ଶିଖାକୁ ଧରିବାକୁ ଚେଷ୍ଟା କରିବା ଓ ଅନ୍ୟମାନେ ରଶି ସାହାଯ୍ୟରେ ଟାଣି ଧରିବା )

ଜ୍ୟୋତି - ନିଅ ଧର ଏ ଆଲୋକ ଶିଖାକୁ । ହଁ....ହଁ , ଚେଷ୍ଟା କର । ......

(ସ୍ଥୁଳ ବ୍ୟାକୁଳ ଭାବରେ ଚେଷ୍ଟା କରିବା ଓ ଧରି ନପାରି ଆଣ୍ଠୋଇ ପଡିବା । ଜ୍ୟୋତି ଧୀରେ ସେ ଆଲୋକ ଶିଖାକୁ ନେଇ ପାଟିର ଚିତ୍ର ନିକଟରେ ଧରିବା ଓ କାଢ଼ିବା। ୧ମ ଚରିତ୍ର ଚିତ୍କାର ଶୁଭିଛି । ଏହିପରି ଅନ୍ୟ ତିନଟି ଚରିତ୍ର ଚାବୁକ,ବହି ଓ ଛୁରୀ ବାହାର କରି ନେଇଛି ଜ୍ୟୋତି । ପ୍ରତିଟି ଆୟୁଧ ବାହାରିବା ବେଳେ ସ୍ଥୁଳ ଧୀରେ ଧୀରେ ଉଠି ଠିଆହୋଇଛି । ଶେଷରେ ସବୁ ବନ୍ଧନରୁ ମୁକ୍ତ ହୋଇ ଚାହିଁଛି ଜ୍ୟୋତିକୁ । ଜ୍ୟୋତି ହସି ଆଲୋକ ଶିଖା ବଢ଼ାଇ ଦେଇଛି ତା ଆଡକୁ । ସ୍ଥୁଳ ଧରି ନେଇଛି । ଜ୍ୟୋତି ଘୁରିବାକୁ ଆରମ୍ଭ କରିଛି ଓ ସ୍ଥୁଳ ପ୍ରଥମେ କଷ୍ଟର ସହ ଓ ଧୀରେ ଧୀରେ ସୁସ୍ଥ ହୋଇ ସମବେଗରେ ଘୁରି ବୁଲିଛି ଜ୍ୟୋତି ସାଙ୍ଗରେ । ଅନ୍ୟ ଆଲୋକ ଲିଭିଯାଇଛି । ଅନ୍ତରାଳରୁ ଶୁଭିଛି....)

ଓଁ ଅସତୋ ମାଂ ସଦ୍‌ଗମୟ......

ତମୋସୋ ମାଂ ଜ୍ୟୋତିର୍ଗମୟ.....

ମୃତ୍ୟୁ ମାଂ ଅମୃତୋଗମୟ....

ଓଁ ଶାନ୍ତିଃ...ଶାନ୍ତିଃ.....ଶାନ୍ତିଃ.....

(ସମସ୍ତ ଆଲୋକ ଏକ ସଙ୍ଗରେ ଜଳି ଉଠି ଲିଭିଯାଇଛି - ନାଟକର ପରିସମାପ୍ତିର ସୂଚନା ଦେଇ ପରଦା ପତନ)

***



ନାଟ୍ୟକାର : **ନାରାୟଣ ପଟ୍ଟନାୟକ**
ଜନ୍ମ ତାରିଖ : ୧୧.୧୧.୧୯୪୪
ଗ୍ରାମ/ପୋ.: ଯୋରକଣି, ଜି.: ପୁରୀ

ଯୋଗାଯୋଗ ଠିକଣା :-
ଡ଼. ଶଶି ରଥ
ଶ୍ରୀହରି ବିହାର, ଜଟଣୀ, ଖୋର୍ଦ୍ଧା
ଓଡ଼ିଶା